


# ଆମ ସ୍ୱରାଜ୍ୟ କାହାଣୀ

ଦ୍ୱିତୀୟ ଭାଗ

ସୁମଙ୍ଗଲ୍ ପ୍ରକାଶ

ନେହେରୁ ବାଳ ପୁସ୍ତକାଳୟ

# ଆମ ସ୍ୱରାଜ୍ୟ କାହାଣୀ

(ଦ୍ୱିତୀୟ ଭାଗ)

ସୁମଙ୍ଗଲ୍ ପ୍ରକାଶ
ଓ
ପି. ଖେମରାଜ
ଅନୁବାଦ
ଶ୍ରୀମତୀ ସୁଲେଖା ପଟ୍ଟନାୟକ



ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ISBN 81-237-2373-3

ପ୍ରଥମ ପ୍ରକାଶ 1980 (ଶକାବ୍ଦ 1902)
ପଞ୍ଚମ ମୁଦ୍ରଣ 1998 (ଶକାବ୍ଦ 1920)

The Story of Swarajya - Part II *(Oriya)*
ଟ. 9.00
ଆଲୋକଚିତ୍ର :
କେନ୍ଦ୍ର ପ୍ରକାଶନ ବିଭାଗ, ତଥ୍ୟ ଓ ବେତାର ମନ୍ତ୍ରଣାଳୟ ସୌଜନ୍ୟରୁ ।

ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ,
ଏ-5, ଗ୍ରୀନ୍ ପାର୍କ, ନୂଆଦିଲ୍ଲୀ-110 016 କର୍ତ୍ତୃକ ପ୍ରକାଶିତ ।

# ବନ୍ଦେ ମାତରମ୍ !

ବନାରସର ସଡ଼କ ଉପରେ ଭିଡ଼ ଜମିଥିଲା । ଏକ ବିରାଟ ଶୋଭାଯାତ୍ରା "ଗାନ୍ଧିଜୀଙ୍କ ଜୟ" ଏବଂ "ବନ୍ଦେ ମାତରମ୍" ଧ୍ୱନି ଦେଇ ଆଗେଇ ଯାଉଥିଲା । ଲୋକମାନଙ୍କ ଭିତରେ ଅପୂର୍ବ ଉତ୍ସାହ । 1919 ମସିହାର ଜାଲିଆନାୱାଲାବାଗର ହତ୍ୟାକାଣ୍ଡ ଓ ପଞ୍ଜାବରେ ହୋଇଥିବା ଅମାନୁଷିକ ଅତ୍ୟାଚାରର ଖବର ଲୋକଙ୍କ ମଧ୍ୟରେ ସେତେବେଳକୁ ବ୍ୟାପିଯାଇଥିଲା । ସେହି କାରଣରୁ ଲୋକେ କ୍ଷୁବ୍ଧ ହୋଇ ଉଠିଥିଲେ । ସହସ୍ର କଣ୍ଠରୁ ଉଚ୍ଚାରିତ ଧ୍ୱନି ଗଗନମଣ୍ଡଳ ମୁଖରିତ କରୁଥିଲା । ପୋଲିସ ଅଚାନକ ସେମାନଙ୍କ ଉପରେ ଚଢ଼ାଉକଲେ । ଧରପଗଡ଼ ଆରମ୍ଭ ହୋଇଗଲା । ଭିଡ଼ରେ ତେର-ଚଉଦ ବର୍ଷର ବାଳକଟିଏ ମଧ୍ୟ ଥିଲା । ସେ ବଡ଼ ଉତ୍ସାହର ସହିତ "ବନ୍ଦେ ମାତରମ୍" ଧ୍ୱନି ଦେଉଥିଲା । ପୋଲିସ ତାକୁ ମଧ୍ୟ ଧରିନେଲେ ।

ଏହା 1921 ମସିହାର ଏକ ଘଟଣା । ସେତେବେଳେ ଗାନ୍ଧିଜୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଚାରିଆଡ଼େ ଗଢ଼ିଉଠୁଥିଲା ।

ଯେଉଁ ବାଳକ ବିଷୟରେ ଏହା କୁହାଗଲା ତାର ନାମ ଚନ୍ଦ୍ରଶେଖର । ମାଜିଷ୍ଟ୍ରେଟଙ୍କ ସମ୍ମୁଖରେ ଯେତେବେଳେ ତାକୁ ଉପସ୍ଥିତ କରାଗଲା ଏବଂ ତାର ନାମ ପଚରାଗଲା, ସେ ଗର୍ବର ସହିତ ମଥା ଉଠାଇ କହିଲା—"ଆଜାଦ୍" । ତାକୁ ବେତ ପ୍ରହାର ଦଣ୍ଡ ଆଦେଶ ହେଲା ।

ଜେଲରେ ସେହି ବାଳକଟିକୁ ଲଙ୍ଗଳା କରି ବେତ ପ୍ରହାର କରାଗଲା । ପ୍ରଥମ ପ୍ରହାରରେ ସେ ଛଟପଟ ହୋଇଉଠିଲା; କିନ୍ତୁ ସେହି ସମୟରେ ଚିତ୍କାର କରିଉଠିଲା, "ବନ୍ଦେ ମାତରମ୍" ।

ପ୍ରହାର ପରେ ପ୍ରହାର ଚାଲିଲା । ପ୍ରତି ବେତ ପ୍ରହାର ପରେ ସେହି ବାଳକ ଆହୁରି ଜୋର୍‌ରେ ଚିତ୍କାର କରିଉଠୁଥିଲା—ବନ୍ଦେ ମାତରମ୍ । ମାଡ଼ ଖାଇ ଖାଇ ସେ ଅଚେତ ହୋଇଗଲା ।

ସେହି ବେତମାଡ଼ ହିଁ ସତରେ ସେହି ବାଳକଟିକୁ ସ୍ୱାଧୀନ କରିଦେଲା । ସେହି ଦିନଠାରୁ ତାର କୌଣସି କଷ୍ଟ କିମ୍ବା ଯନ୍ତ୍ରଣାର ଡର ରହିଲା ନାହିଁ ।

ଏହି ବୀର ବାଳକ ପରବର୍ତ୍ତୀ କାଳରେ ଚନ୍ଦ୍ରଶେଖର ଆଜାଦ୍ ନାମରେ ପ୍ରସିଦ୍ଧ ହେଲେ । ତାଙ୍କ ବୀରତ୍ୱର କାହାଣୀ ପରେ କହିବା ।

ଆମ ସ୍ୱରାଜ୍ୟ କାହାଣୀର ପ୍ରଥମ ଭାଗରେ କୁହାଯାଇଛି ଯେ 1905 ମସିହାର ବଙ୍ଗଭଙ୍ଗ ପରେ ଦେଶରେ ଜନଜାଗରଣ ବ୍ୟାପକ ହୋଇ ଉଠିଥିଲା । ଯେଉଁ ନେତାମାନେ ବ୍ରିଟିଶ ସରକାରଙ୍କର ସମର୍ଥନ କରୁଥିଲେ ତାଙ୍କର ପ୍ରଭାବ କମିଆସୁଥିଲା । ଆନ୍ଦୋଳନକାରୀଙ୍କର ଗୁପ୍ତ କାର୍ଯ୍ୟକଳାପ ତେଜିଉଠୁଥିଲା । ସେମାନେ ବାଛି ବାଛି ଏଭଳି ଗୋରା ଅଫିସରଙ୍କୁ ହତ୍ୟା କରୁଥିଲେ, ଯେଉଁମାନେ ନିଜର ଅତ୍ୟାଚାର ପାଇଁ କୁଖ୍ୟାତି ଲଭିଥିଲେ । ଅପରପକ୍ଷେ ଲୋକମାନ୍ୟ ତିଳକ, ଲାଲା ଲଜପତରାୟ ଓ ବିପିନ ଚନ୍ଦ୍ର ପାଲଙ୍କ ଭଳି ନେତାମାନଙ୍କ ପ୍ରଭାବ ଦେଶରେ ବଢ଼ୁଥିଲା । ସେମାନେ ଜନସାଧାରଣଙ୍କୁ ଇଂରେଜ ସରକାରଙ୍କର ବିରୋଧ କରିବାପାଇଁ ମତାଉଥିଲେ । ଏହାଦ୍ୱାରା ବ୍ରିଟିଶ ସରକାର ବ୍ୟତିବ୍ୟସ୍ତ ହେଲେ ଏବଂ ଦମନଲୀଳା ଆରମ୍ଭ କରିଦେଲେ । ବାଛି ବାଛି ବଡ଼ ବଡ଼ ନେତାମାନଙ୍କୁ ଧରି ଜେଲରେ ବନ୍ଦୀକଲେ ।

ଜନସାଧାରଣଙ୍କ ମଧ୍ୟରେ ଏହାଦ୍ୱାରା ଅସନ୍ତୋଷ ଆହୁରି ବଢ଼ିଗଲା । ଶେଷରେ ସରକାରଙ୍କୁ ନଇଁବାକୁ ପଡ଼ିଲା । ବଙ୍ଗ-ଭଙ୍ଗ ଆଦେଶ ରଦ୍ଦ କରିଦିଆଗଲା । ଜନସାଧାରଣଙ୍କର ବିଜୟ ହେଲା ।

କିଛି ଦିନ ପରେ 1914 ମସିହାରେ ୟୁରୋପରେ ମହାଯୁଦ୍ଧ ଆରମ୍ଭ ହୋଇଗଲା । ଏହି ଯୁଦ୍ଧ ଚାରିବର୍ଷଧରି ଚାଲିଲା । ଯୁଦ୍ଧର ଖର୍ଚ୍ଚ ତୁଲାଇବା ପାଇଁ ଭାରତରୁ ସମସ୍ତ ଧନ ବିଲାତ ପଠାଇଦିଆଗଲା । ଯୁଦ୍ଧ ପାଇଁ ଭାରତର ଧନୀ ଦରିଦ୍ର ସମସ୍ତଙ୍କଠାରୁ କର ଅସୁଲ କରାଗଲା । ଦିନକୁ ଦିନ ଦରଦାମ ବଢ଼ିଚାଲିଲା । ଖାଦ୍ୟସାମଗ୍ରୀ ଦର ତିନି ଚାରି ଗୁଣ ବଢ଼ିଗଲା ।

ୟୁରୋପରେ ଯେତେବେଳେ ଯୁଦ୍ଧ ଆରମ୍ଭ ହୁଏ ସେତେବେଳେ ଭାରତର ଆନ୍ଦୋଳନକାରୀମାନେ ଏହାର ସୁବିଧା ଉଠାଇବାକୁ ଚାହିଁଲେ । ସେହି ସମୟରେ ଲାଲା ହରଦୟାଲ୍, ରାଜା ମହେନ୍ଦ୍ର ପ୍ରତାପ ସିଂହ ଓ ଔବେଦୁଲ୍ଲା ଆଦି ବିପ୍ଳବୀ ନେତାମାନେ ଭାରତ ବାହାରେ ଥିଲେ । ସେମାନେ ଜର୍ମାନୀ ସହିତ ମେଣ୍ଟ କରି ଭାରତକୁ ଲୁଚିଛପି ଅସ୍ତ୍ରଶସ୍ତ୍ର ପଠାଇବା ଯୋଗାଡ଼ କଲେ । ଆମେରିକାରେ ରହିଥିବା ପଞ୍ଜାବୀ ଲୋକେ ଯେତେବେଳେ ଗଦର ପାର୍ଟି ଗଠନ କରି ସାରିଥିଲେ । ଯେଉଁ ଯେଉଁ ସ୍ଥାନରେ ଭାରତୀୟମାନେ ବସତି ସ୍ଥାପନ କରିଥିଲେ ସେମାନଙ୍କୁ ଗୋପନଭାବେ ବିପ୍ଳବକାରୀ ଦଳରେ ସାମିଲ୍ କରାଗଲା । ସେଠାରେ ଅସ୍ତ୍ରଶସ୍ତ୍ର କିଣିବା ପାଇଁ ଚାନ୍ଦା ଆଦାୟ କରାଗଲା । ବଙ୍ଗଳା ଓ ପଞ୍ଜାବର ବିପ୍ଳବକାରୀମାନଙ୍କ ପାଖରେ ଅସ୍ତ୍ରଶସ୍ତ୍ର ପହଞ୍ଚିବାରେ ଲାଗିଲା । 1915 ମସିହା ଫେବୃୟାରୀ ମାସରେ ଭାରତୀୟ ବିପ୍ଳବୀମାନେ ଭାରତରେ ଥିବା ଇଂରେଜ ସରକାରଙ୍କ ବିରୋଧ କରିବାକୁ ପ୍ରସ୍ତୁତ ହେଲେ । ରାସବିହାରୀ ବୋଷ ଓ ଯତୀନ୍ ମୁଖାର୍ଜୀ ସେମାନଙ୍କର ନେତା ଥିଲେ ।

ୟୁରୋପ ଯୁଦ୍ଧ ପାଇଁ ବହୁ ସଂଖ୍ୟକ ଇଂରେଜ ସୈନ୍ୟ ଚାଲିଯାଇଥିବାରୁ ଭାରତରେ ସୈନ୍ୟବଳ କମ୍ ଥିଲା । ଗୋରାଲୋକଙ୍କ ସଂଖ୍ୟା ବହୁତ କମିଯାଇଥିଲା । ବିପ୍ଳବ କରିବା ପାଇଁ ଏହାଠାରୁ ବା ଭଲ ସମୟ କ'ଣ ହୋଇ ପାରିଥାଆନ୍ତା ! କିନ୍ତୁ ନିର୍ଦ୍ଦିଷ୍ଟ ଦିନ ପୂର୍ବରୁ ସରକାରଙ୍କୁ ଏହି ଷଡ଼ଯନ୍ତ୍ରର ସମ୍ବାଦ ମିଳିଗଲା । ବିପ୍ଳବକାରୀଙ୍କ ଧରପଗଡ଼ ଆରମ୍ଭ ହୋଇଗଲା । ପଞ୍ଜାବଠାରୁ ବଙ୍ଗଳା ପର୍ଯ୍ୟନ୍ତ ଅପରାଧୀ ଓ ନିରପରାଧଙ୍କ ଉପରେ ନାନା ପ୍ରକାର ଜୁଲମ କରାଗଲା । ବିପ୍ଳବ ବିଫଳ ହେଲା ଏବଂ ବିପ୍ଳବୀ ନେତା ଯତୀନ୍ ମୁଖାର୍ଜୀ ଲଢ଼ି ଲଢ଼ି ମୃତ୍ୟୁ ବରଣ କଲେ । ରାସବିହାରୀ ବୋଷଙ୍କୁ ସରକାର ବନ୍ଦୀ କରିପାରିଲେ ନାହିଁ ଏବଂ ସେ ଜାପାନ ପଳାଇଲେ ।

କିନ୍ତୁ ସରକାରଙ୍କ ଅତ୍ୟାଚାର ଯେତେ ବଢ଼ିଲା, ଲୋକଙ୍କର କ୍ରୋଧ ସେତେ ପ୍ରଚଣ୍ଡ ହୋଇଉଠିଲା ।

ବାଳ ଗଙ୍ଗାଧର ତିଳକ୍ ନିଜର କାରାଦଣ୍ଡ ପୂରଣ କରି ମାଣ୍ଡାଲେ ଜେଲରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ଯାଇଥିଲେ । ସେ ଏତେ ଲୋକପ୍ରିୟ ଥିଲେ ଯେ ଭାରତର ସମସ୍ତ ଲୋକମାନେ ତାଙ୍କୁ "ଲୋକମାନ୍ୟ" ଉପାଧିରେ ଭୂଷିତ କରିଥିଲେ । 1916 ମସିହାରେ ଲକ୍ଷ୍ନୌଠାରେ କଂଗ୍ରେସର ଯେଉଁ ଅଧିବେଶନ ହୋଇଥିଲା ସେଥିରେ ନରମପନ୍ଥୀଙ୍କର କିଛି ପ୍ରଭାବ ପଡ଼ି ନଥିଲା ଏବଂ କଂଗ୍ରେସ ଉପରେ ରାଷ୍ଟ୍ରବାଦୀଙ୍କର ପୁଣି ଅଧିକାର ଆସିଗଲା । ଏହି କଂଗ୍ରେସଦଳରେ ଭାରତର ହିନ୍ଦୁ ଓ ମୁସଲମାନ ନେତାମାନେ ମିଳିକରି ଭାରତ ବର୍ଷରେ ଭାରତୀୟଙ୍କ ଶାସନ ଚାଲୁ ବୋଲି ସରକାରଙ୍କ ନିକଟରେ ଏକ ପ୍ରସ୍ତାବ ଉପସ୍ଥାପିତ କଲେ ।

[ଲୋକମାନ୍ୟ ବାଳ ଗଙ୍ଗାଧର ତିଳକ]



ସେମାନେ ଇଂରେଜ ସରକାରଙ୍କୁ ଆଶ୍ୱାସନା ଦେଲେ ଯେ, ଯଦି ଯୁଦ୍ଧ ସରିବା ପରେ ପରେ ଭାରତକୁ ସ୍ୱୟଂଶାସନ ଅଧିକାରର ପ୍ରତିଶ୍ରୁତି ମିଳେ, ତେବେ ଭାରତବାସୀ ମଧ୍ୟ ଇଂରେଜଙ୍କୁ ଯୁଦ୍ଧରେ ସାହାଯ୍ୟ କରିବାକୁ ଅକୁଣ୍ଠିତ ଭାବେ ଆଗେଇ ଆସିବେ ।

ଇତିମଧ୍ୟରେ ଗୋଟିଏ ନୂଆ ଘଟଣା ଘଟିଗଲା । ଭାରତରେ ଜଣେ ଅତ୍ୟନ୍ତ ଶିକ୍ଷିତା ଓ ବୟୋଜ୍ୟେଷ୍ଠା ଆଇରିସ୍ ମହିଳା ରହୁଥିଲେ । ତାଙ୍କ ନାମ ଥିଲା ଆନି ବେସାନ୍ତ । ଭାରତ ପ୍ରତି ତାଙ୍କର ପ୍ରଗାଢ଼ ପ୍ରେମ ଥିଲା ଓ ଏଠାକାର ଧର୍ମ ପ୍ରତି ବହୁତ ଶ୍ରଦ୍ଧା ଥିଲା । ସେ ମଧ୍ୟ



ଭାରତରେ ଭାରତୀୟ ଶାସନ ପାଇଁ "ହୋମ ରୁଲ୍ ଲିଗ୍" ନାମରେ ଏକ ସଂସ୍ଥା ଗଢ଼ିଲେ ଓ ସାରା ଭାରତ ଭ୍ରମଣ କଲେ । ଏହି ନାମରେ ଆଉ ଏକ ସଂସ୍ଥା ଲୋକମାନ୍ୟ ତିଳକ ମଧ୍ୟ କାର୍ଯ୍ୟକାରୀ କରିଥିଲେ । ଜଣେ ବିଦେଶୀ ମହିଳାଙ୍କର ଏହି ପ୍ରକାର କାର୍ଯ୍ୟର ପ୍ରଭାବଦ୍ୱାରା ରାଷ୍ଟ୍ରବାଦୀଙ୍କର ସାହସ ଆହୁରି ବଢ଼ିବାକୁ ଲାଗିଲା । 1917 ମସିହା ସୁଦ୍ଧା, ଯେତେବେଳେ ୟୁରୋପ ଯୁଦ୍ଧ ଲାଗିବାର ତିନିବର୍ଷ ବିତିଯାଇଥିଲା ଓ ଇଂରେଜମାନଙ୍କର ପରାଜୟ ପରେ ପରାଜୟ ହୋଇଯାଉଥିଲା, ସ୍ୱରାଜ୍ୟ ଆନ୍ଦୋଳନ ତୀବ୍ରଭାବେ ତେଜିଉଠୁଥିଲା । ଆନି ବେଷାନ୍ତ ଓ ଲୋକମାନ୍ୟ ତିଳକଙ୍କର ବଢ଼ୁଥିବା ପ୍ରଭାବକୁ ବନ୍ଦ କରିବା ପାଇଁ ସରକାର ଭିନ୍ନ ପ୍ରକାର ପଦକ୍ଷେପ ନେଲେ; କିନ୍ତୁ ପରିଣାମ ଠିକ୍ ଓଲଟା ହେଲା ।

ପରିଶେଷରେ ଇଂରେଜ ସରକାର ବ୍ୟତିବ୍ୟସ୍ତ ହୋଇଗଲେ । 1917 ମସିହା ଅଗଷ୍ଟ ମାସରେ ସେମାନେ ଦେଶ ଶାସନରେ ଭାରତୀୟମାନଙ୍କୁ ମଧ୍ୟ କିଛି ଅଂଶ ଦେବେ ବୋଲି ଘୋଷଣା କଲେ । ଏହି ଘୋଷଣା ରାଷ୍ଟ୍ରବାଦୀମାନଙ୍କ ପାଇଁ ସନ୍ତୋଷଜନକ ନ ଥିଲା, କିନ୍ତୁ ଏହାଦ୍ୱାରା ସେମାନଙ୍କର କ୍ରୋଧ କିଛି କମିଯାଇଥିଲା ।

1918 ମସିହା ମେ' ମାସରେ ମହାଯୁଦ୍ଧର ସମାପ୍ତି ହୋଇଥିଲା ଓ ଇଂରେଜମାନଙ୍କର ବିଜୟ ହୋଇଥିଲା । କିନ୍ତୁ ଏବେ ସେମାନେ ଭାରତୀୟଙ୍କୁ ଶାସନରେ ଭାଗ ଦେବେ ବୋଲି ଯେଉଁ ନୀତି ଘୋଷଣା କଲେ ତାହା ସମସ୍ତ ଭାରତବାସୀଙ୍କୁ ନିରାଶ କଲା । ଭାରତୀୟମାନେ ଏହାଠାରୁ ଖୁବ୍ ଅଧିକ ଆଶା କରୁଥିଲେ ।

ଏହା ସତ୍ତ୍ୱେ ରାଷ୍ଟ୍ରବାଦୀମାନେ ନିଷ୍ପତ୍ତି କଲେ ଯେ ଯେତିକି ଅଧିକାର ତାଙ୍କୁ ମିଳୁଛି, ତାକୁ ନେଇ ଆଗେଇ ଚାଲିବେ ।

## ରାଓଲଟ୍ ଆଇନ ଓ ଜାଲିଆନାବାଲାବାଗ୍

ଭାରତରେ ଥିବା ଇଂରେଜ ଅଫିସରମାନେ କ୍ରୋଧ-ଜର୍ଜରିତ ହୋଇ ରହିଥିଲେ । ମହାଯୁଦ୍ଧ ସମୟରେ ଏଠାକାର ବିପ୍ଳବୀ ଓ ରାଷ୍ଟ୍ରବାଦୀମାନଙ୍କ ଯୋଗୁଁ ସେମାନେ ଯେଉଁ ଅସୁବିଧା ଭୋଗିଥିଲେ ତାର ଉପଯୁକ୍ତ ପ୍ରତିଶୋଧ ନେବାକୁ ସେମାନେ ଚାହୁଁଥିଲେ । ବିପ୍ଳବୀମାନଙ୍କର ଗୁପ୍ତ କାରବାରକୁ ଦବାଇବା ବାହାନାରେ ଏବେ ସେମାନେ "ରାଓଲଟ୍ ଆଇନ" ନାମକ ଏକ ଅତ୍ୟାଚାରପୂର୍ଣ୍ଣ ଆଇନ ପ୍ରଣୟନ କଲେ; ଯାହାଦ୍ୱାରା କି ଯେକୌଣସି ବ୍ୟକ୍ତିକୁ ବିନା ମକଦ୍ଦମାରେ ଜେଲ୍‌ରେ ବନ୍ଦ କରି ରଖାଯାଇପାରିବ । ଏହି ଆଇନ ଫଳରେ ସରକାରୀ ଅଫିସରଙ୍କ ସହିତ ଭାରତୀୟ ଜନସାଧାରଣ କୌଣସି ପ୍ରକାର ସହଯୋଗ କରିବାର ଅବକାଶ ରହିଲା ନାହିଁ ।

ସାରା ଭାରତବାସୀ ଏକଜୁଟ ହୋଇ ଏହି କଳା ଆଇନର ବିରୋଧ କଲେ ।

ଏହି ସମୟରେ ମହାତ୍ମା ଗାନ୍ଧୀ ସର୍ବପ୍ରଥମେ ଅହିଂସା ଓ ସତ୍ୟାଗ୍ରହର ଅସ୍ତ୍ର ପ୍ରୟୋଗ କରିବାକୁ ପରାମର୍ଶ ଦେଇଥିଲେ । ସତ୍ୟାଗ୍ରହର ଅମୋଘ ଅସ୍ତ୍ର ଦକ୍ଷିଣ-ଆଫ୍ରିକାରେ ସେ ବହୁ ସଫଳତାର ସହିତ ପ୍ରୟୋଗ କରିପାରିଥିଲେ । ସଂକ୍ଷେପରେ ଏହାର ଉଦ୍ଦେଶ୍ୟ ହେଲା—ଅତ୍ୟାଚାର କରୁଥିବା ଲୋକଙ୍କୁ ଡରିବ ନାହିଁ, ବିନା କାରଣରେ ଯଦି ଆକ୍ରମଣ ହୁଏ ତେବେ ନିଜର ଅଧିକାର ଲାଗି ଦୃଢ଼ ରହିବ । ତାଙ୍କର ଉଦ୍ଦେଶ୍ୟ ଥିଲା ଏକ ପକ୍ଷେ ଅତ୍ୟାଚାରୀର ହୃଦୟରେ ସୁପ୍ତ କୋମଳତାକୁ ଜାଗ୍ରତ କରାଇବା ଏବଂ ଅନ୍ୟ ପକ୍ଷେ ନିଜର ନିର୍ଭୀକତା ଦ୍ୱାରା ସମସ୍ତ ଅତ୍ୟାଚାରିତ ଲୋକଙ୍କ ମଧ୍ୟରେ ଏଇଭଳି ନିର୍ଭୀକତା ଜନ୍ମାଇବା ।

ଶୁଣିବା ଲୋକେ ହସି ଉଡ଼ାଇଥିଲେ—ଇଏ ପୁଣି ଯୁଦ୍ଧ କରିବାର ଗୋଟିଏ ଉପାୟ ! କିନ୍ତୁ ଗାନ୍ଧୀଜୀ ଦକ୍ଷିଣ-ଆଫ୍ରିକାରେ ଭାରତୀୟମାନଙ୍କ ପ୍ରତି କରାଯାଉଥିବା ଅନ୍ୟାୟର ଏହିଭଳି ପ୍ରତିରୋଧ କରିଥିଲେ ଏବଂ ସତ୍ୟାଗ୍ରହୀମାନଙ୍କର ଏକ ସେନା ଗଢ଼ିଥିଲେ । ସେମାନେ ଚୁପ୍‌ଚାପ୍ ହାତକଡ଼ି ପିନ୍ଧି ପୋଲିସର ଲାଠି ପ୍ରହାରକୁ ସହିନେଉଥିଲେ ଓ ହସି ହସି ଜେଲ ଯାଉଥିଲେ । ଶୁଣିବା ଓ ଦେଖିବା ଲୋକେ ଆଶ୍ଚର୍ଯ୍ୟ ହୋଇଯାଉଥିଲେ । ଆଖିରେ ଦେଖି ମଧ୍ୟ ସେମାନେ ବିଶ୍ୱାସ କରିପାରୁ ନ ଥିଲେ ଯେ ଏହି ସତ୍ୟାଗ୍ରହୀମାନେ କେବଳ ସତ୍ୟକୁ ଆଶ୍ରା କରି କିପରି ଲଢ଼ୁଥିଲେ ।

ମହାଯୁଦ୍ଧ ସମୟରେ ଗାନ୍ଧୀଜୀ ନିଜ ଦେଶକୁ ଫେରିଆସିଲେ । ସତ୍ୟାଗ୍ରହରେ ବିଶ୍ୱାସ ରଖିଥିବା କେତେଜଣ ଲୋକଙ୍କୁ ସାଙ୍ଗରେ ନେଇ ସେ ଗୁଜୁରାଟରେ ନିଜର ସତ୍ୟାଗ୍ରହ ଆଶ୍ରମ ଖୋଲିଥିଲେ । ସମସ୍ତ ପ୍ରକାର ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ଧୀରେ ଧୀରେ ସେ ଏଠାରେ ମଧ୍ୟ ସତ୍ୟାଗ୍ରହର ଅସ୍ତ୍ର ପ୍ରୟୋଗ କରିବାକୁ ଲାଗିଲେ । ବିହାରର ଚମ୍ପାରଣ ଜିଲ୍ଲାର କୃଷୀମାନଙ୍କ ଦ୍ୱାରା ନୀଳ ଚାଷ କରାଉଥିବା ଇଂରେଜମାନେ ଖୁବ୍ ଅତ୍ୟାଚାର କରୁଥିଲେ । ସେଠାକାର କୃଷୀମାନଙ୍କ ଆମନ୍ତ୍ରଣକ୍ରମେ ଗାନ୍ଧୀଜୀ ତାଙ୍କ ପାଇଁ ଲଢ଼େଇ କରିବାକୁ ସେଠାରେ ଯାଇ ପହଞ୍ଚିଲେ । ତାଙ୍କୁ ଚମ୍ପାରଣ ଜିଲ୍ଲା ଛାଡ଼ି ଚାଲିଯିବା ପାଇଁ ଆଦେଶ ହେଲା । ଗାନ୍ଧୀଜୀ ତାହା ମାନିଲେ ନାହିଁ ଏବଂ ଗିରଫ ହେଲେ । 1917 ମସିହା ଅପ୍ରେଲ ୪ ତାରିଖରେ ତାଙ୍କ ଉପରେ ପ୍ରଥମ ମକଦ୍ଦମା ହେଲା । ସେ ନିଜ ଦୋଷ ସ୍ୱୀକାର କରିନେଲେ ଏବଂ କହିଲେ ଯେ, ସେ ସରକାରୀ ହୁକୁମ ମାନି ପାରିବେ ନାହିଁ; କାରଣ ସରକାରଙ୍କ ଉପରେ ଆହୁରି ଏକ ଶକ୍ତି ଅଛି, ଯାହାଙ୍କ ହୁକୁମ ସରକାରୀ ହୁକୁମଠାରୁ ଆହୁରି ବଡ଼ ।

ଦକ୍ଷିଣ-ଆଫ୍ରିକାରେ ଗାନ୍ଧୀଜୀ ଯାହା କିଛି କରିଥିଲେ ସେ ବିଷୟରେ ଇଂରେଜ ସରକାର ଜାଣିଥିଲେ । ତାଙ୍କୁ ଦଣ୍ଡ ଦେଇ ଲୋକଙ୍କୁ ଆହୁରି ଉତ୍ତେଜିତ କରିବା ପାଇଁ



[ସତ୍ୟାଗ୍ରହ ଆଶ୍ରମ]

ସରକାରଙ୍କର ସାହସ ହେଲା ନାହିଁ । ଗାନ୍ଧୀଜୀଙ୍କୁ ଛାଡ଼ିଦିଆଗଲା । ଏହାପରେ ସେ ଚାଷୀମାନଙ୍କ ମଧ୍ୟରେ ବୁଲି ବୁଲି ତାଙ୍କ ଉପରେ ହେଉଥିବା ଅତ୍ୟାଚାରର ଖବର ନେଲେ । ପରିଶେଷରେ ତାଙ୍କର ପରାମର୍ଶ ଅନୁଯାୟୀ ସରକାରଙ୍କୁ ଏଭଳି ଆଇନ କରିବାକୁ ପଡ଼ିଲା ଯାହାଦ୍ୱାରା ଚାଷୀମାନଙ୍କ ଉପରେ ଅତ୍ୟାଚାର ବନ୍ଦହେଲା ।

କିନ୍ତୁ ଏ ସବୁ ଥିଲା ଛୋଟ ଛୋଟ ଘଟଣା । କୌଣସି ରାଷ୍ଟ୍ରୀୟ ସମସ୍ୟାରେ ଗାନ୍ଧୀଜୀ ଏପର୍ଯ୍ୟନ୍ତ ସତ୍ୟାଗ୍ରହ ଅସ୍ତ୍ର ନେଇ ସରକାରଙ୍କ ବିରୁଦ୍ଧରେ ଠିଆ ହୋଇ ନ ଥିଲେ

ମହାଯୁଦ୍ଧ ପରେ ପ୍ରଣୟନ କରାଯାଇଥିବା ରାଉଲଟ୍ ଆଇନ ଗାନ୍ଧୀଜୀଙ୍କୁ ଏହି ସୁଯୋଗ ଦେଇଥିଲା । ସେ କେତେକ ସତ୍ୟାଗ୍ରହୀଙ୍କୁ ନେଇ ସରକାରଙ୍କ ବିରୁଦ୍ଧରେ ସତ୍ୟାଗ୍ରହ କରିବାର ନିଷ୍ପତ୍ତି ନେଲେ । ଏହା 1919 ମସିହାର କଥା । ସମଗ୍ର ଦେଶବାସୀଙ୍କ ସହଯୋଗ ପାଇବା ପାଇଁ ସେ ଏକ ନିର୍ଦ୍ଦିଷ୍ଟ ଦିନ ସ୍ଥିର କଲେ । ତାଙ୍କର ନିର୍ଦ୍ଦେଶ ଥିଲା ସେ ସେହି ଦିନ ଅଧିକରୁ ଅଧିକତର ଲୋକ ଦିନ ସାରା ଉପବାସ କରିବେ ଓ ସନ୍ଧ୍ୟାରେ ସଭା କରି ସେଇ କଳା ଆଇନର ବିରୋଧ କରିବେ । ଏହି ଦିନଟି ଥିଲା ଅପ୍ରେଲ 6 ତାରିଖ ଓ ତାହା 'ସତ୍ୟାଗ୍ରହ ଦିବସ' ନାମରେ ପ୍ରସିଦ୍ଧ ହେଲା ।

ସାରା ଦେଶରେ ଅଦମ୍ୟ ଉତ୍ସାହ ଖେଳିଗଲା । କିନ୍ତୁ ଗାନ୍ଧୀଜୀଙ୍କର ଗୋଟିଏ କଥା ଲୋକେ ଭୁଲିଗଲେ । ସେ ବାରମ୍ବାର କହୁଥିଲେ ଯେ, ସରକାରଙ୍କର ଅତ୍ୟାଚାର ସତ୍ତ୍ୱେ ଲୋକଙ୍କୁ ଶାନ୍ତ ରହିବାକୁ ପଡ଼ିବ । ଅନେକ ସ୍ଥାନରେ ଲୋକେ ଉତ୍ତେଜିତ ହୋଇଉଠିଲେ ଏବଂ ପୋଲିସ ଗୁଳି ଚଳାଇଥିଲେ । ଅନେକ ଲୋକ ମଲେ ଓ ଆହତ ହେଲେ । ସରକାର ପୁଣି ଦମନ କରିବା ଆରମ୍ଭ କରିଦେଲେ—ବିଶେଷ କରି ପଞ୍ଜାବରେ । ପଞ୍ଜାବରେ ବିଦ୍ରୋହର ସବୁଠାରୁ ବେଶି ଡର ଥିଲା । ଯୁଦ୍ଧ ସମୟରେ ସୈନ୍ୟବାହିନୀରେ ସବୁଠାରୁ ବେଶି ଭାଗ ଲୋକ ସେଠାରୁ ହିଁ ଭର୍ତ୍ତି ହୋଇଥିଲେ । ସେମାନେ ରଣାଙ୍ଗନରେ ଯେଉଁ କୌଶଳ ଦେଖାଇଥିଲେ ସେଥିରେ ୟୁରୋପର ଲୋକେ ମଧ୍ୟ ଚକିତ ହୋଇଥିଲେ । କିନ୍ତୁ ଇଂରେଜ ସରକାର ଏହି ସୈନ୍ୟବାହିନୀକୁ ବିଶେଷ ଗୁରୁତ୍ୱ ଦେବାକୁ ଚାହୁଁ ନ ଥିଲେ । ତାଙ୍କର ଡର ଥିଲା ଯେ, ଯଦି ସେମାନେ ସୈନ୍ୟବାହିନୀରେ ଇଂରେଜ ସୈନ୍ୟଙ୍କ ସହ ସମାଧିକାର ଦାବି କରନ୍ତି ତେବେ ଭାରତୀୟ ରାଷ୍ଟ୍ରବାଦୀମାନେ ତାହାର ନିଶ୍ଚୟ ସୁବିଧା ଉଠାଇବେ । ଏଥିପାଇଁ ସେମାନେ ଖୁବ୍ ତତ୍ପରତାର ସହ ବଡ଼ ବଡ଼ ନେତାମାନଙ୍କୁ ବନ୍ଦୀ କରିବା ଆରମ୍ଭ କରିଦେଲେ ।

ଲୋକଙ୍କର ଆହୁରି ଉତ୍ସାହ ବଢ଼ିଲା । ବଡ଼ ବଡ଼ ସଭା ହେଲା । ପଞ୍ଜାବ ସରକାର ଆହୁରି କଠୋର ହେଲେ । କିନ୍ତୁ ସ୍ଥାନେ ସ୍ଥାନେ ଜନତା ଅଧିକରୁ ଅଧିକ ଉତ୍ତେଜିତ ହୋଇ ଉଠିଲେ । ଇଂରେଜମାନଙ୍କଁ ଧରି ପ୍ରତିଶୋଧ ନେବାକୁ ଲାଗିଲେ ଏବଂ ମୂଲ୍ୟବାନ ସରକାରୀ

[ଜନତାଙ୍କ ଉପରେ ପୋଲିସର ଲୁହବୁହାଗ୍ୟାସ ପ୍ରୟୋଗ]



ସମ୍ପତ୍ତି ଭଙ୍ଗାରୁଜା କଲେ । ଏ ସବୁର ଚରମ ପରିଣତି ହେଲା ଜାଲିଆନାୱାଲାବାଗ୍‌ର ସେହି ନୃଶଂସ ନରସଂହାର ।

1919 मସିହା ଅପ୍ରେଲ 13 ତାରିଖ ସନ୍ଧ୍ୟା । ଅମୃତସରରେ ଜାଲିଆନାୱାଲାବାଗ ନାମକ ଏକ ଛୋଟ ପଡ଼ିଆରେ ସଭା ହେଉଥିଲା । "ଭାରତୀୟମାନଙ୍କୁ ଏମିତି ଶିକ୍ଷାଟାଏ ଦେବ ଯେ ସବୁ ଦିନକୁ ମନେ ରଖିବେ"—ଏହିପରି ପ୍ରତିଜ୍ଞାବଦ୍ଧ ହୋଇଥିବା ଜଣେ ଇଂରେଜ ଅଫିସର ଜେନେରାଲ ଡାୟାର ଏକଶହ ଭାରତୀୟ ସିପାହି ଓ ପଚାଶ ଗୋରା ସିପାହିଙ୍କର ଗୋଟିଏ ଫୌଜ ନେଇ ସେଠାରେ ପହଞ୍ଚିଲେ । ସଭାରେ ପ୍ରାୟ କୋଡ଼ିଏ ହଜାର ଲୋକଙ୍କର ଅସହ୍ୟ ଭିଡ଼ ଥିଲା । ସେଥିରେ ଛୋଟ ପିଲା, ବୃଦ୍ଧ ଓ ସ୍ତ୍ରୀଲୋକ ମଧ୍ୟ ଥିଲେ । ପୂର୍ବରୁ କୌଣସି ପ୍ରକାର ଖବର ନ ଦେଇ, ସଭା ଭାଙ୍ଗିବାକୁ କୌଣସି ସୁଯୋଗ ନ ଦେଇ, ସେଠାରୁ କାହାକୁ ହେଲେ ମଧ୍ୟ ଖସିଯିବା ପାଇଁ ରାସ୍ତା ନ ଦେଇ, ଲୋକଙ୍କ ଉପରକୁ ସେ ଗୁଳି ଚଳାଇବାକୁ ହୁକୁମ ଦେଲେ । ବାସ୍ତବରେ ସେହି ଇଂରେଜ ଅଫିସର ସମସ୍ତଙ୍କୁ ଗୁଳି କରି ମାରିଦେବାକୁ ସେଠାରେ ପହଞ୍ଚିଥିଲେ, ତେଣୁ ଏହି ସୁଯୋଗକୁ ହାତରୁ ଛାଡ଼ିଦେବାକୁ ସେ ରାଜି ନଥିଲେ । ସେହି ଛୋଟ ପଡ଼ିଆଟି ଚାରିଦିଗରୁ ଉଚ୍ଚ ଘରର ପାଚେରି ଦ୍ୱାରା ଘେରି ହୋଇ ରହିଥିଲା । ବାହାରକୁ ଆସିବାର ଏକମାତ୍ର ସଙ୍କୀର୍ଣ୍ଣ ରାସ୍ତା ଥିଲା । ଏତେ ଅସୁବିଧା ଥିଲା ଯେ ଜେନେରାଲ ଡାୟାର ନିଜ ସଙ୍ଗେ ଯେଉଁ ସୈନ୍ୟ ଓ ଗାଡ଼ି ନେଇଥିଲେ ତାହା ମଧ୍ୟ ଭିତରକୁ ପଶି ପାରି ନ ଥିଲା । ଯଦି ଗାଡ଼ି ଭିତରକୁ ଯାଇ ପାରି ଥାଆନ୍ତା ତାହାହେଲେ ସେ ବୋଧହୁଏ ସମସ୍ତଙ୍କୁ ମେସିନ୍ ଗନ୍ ଦ୍ୱାରା ଉଡ଼ାଇଦେଇଥାନ୍ତେ ।



ସିପାହିଙ୍କ ବନ୍ଧୁକରୁ ଜୋର୍‌ସୋର୍ ଗୁଳି ଚାଲିଲା । ଲୋକଙ୍କ ମଧ୍ୟରେ ଭୟଙ୍କର ଆତଙ୍କ ଖେଳିଗଲା । କିନ୍ତୁ ଦୌଡ଼ି ପଳେଇବେ ବା କେଉଁଠାକୁ ? ଗୁଳିବର୍ଷଣ ଅବିରାମ ଲାଗିରହିଥାଏ । ପ୍ରାୟ 1600 ଗୁଳି ଚାଲିବାବେଳକୁ ଶହ ଶହ ଲୋକ ମରିଥିଲେ ଓ ହଜାର ହଜାର ଆହତ ହୋଇଥିଲେ । ଏହାଠାରୁ ଆହୁରି ବଡ଼ ଅତ୍ୟାଚାର ଏହା ଥିଲା କି ସାରା ରାତି ସେଠାରେ ସିପାହିଙ୍କ କଡ଼ା ପହରା ଜାରି ରହିଥିଲା; ଯେପରିକି ମୃତ ଓ ଆହତ ଲୋକଙ୍କୁ ସେଠାରୁ କେହି ଉଠାଇ ନ ନେଇ ପାରନ୍ତି । ସେମାନଙ୍କୁ ପ୍ରାଥମିକ ଚିକିତ୍ସା ମଧ୍ୟ ଦିଆଯାଇ ନ ଥିଲା ।

ତା ପରେ ପଞ୍ଜାବକୁ ସମଗ୍ର ଦେଶରୁ ପ୍ରାୟ ଅଲଗା କରି ରଖାଗଲା ; ଯେପରିକି ସେଠାକାର ଖବର ବାହାରକୁ ଯାଇ ପାରିବ

ନାହିଁ । ପୁଣି ସମଗ୍ର ପଞ୍ଜାବରେ ପ୍ରାୟ ଏକ ସପ୍ତାହ ଧରି ଯେଉଁ ଦମନଲୀଳା ଚାଲିଲା, ସେଥିରୁ ଏହା ମନେହେଉଥିଲା ଯେପରିକି ପଞ୍ଜାବର ଗୋରା ଅଫିସରମାନେ ପାଗଳ ହୋଇଯାଇଥିଲେ ଏବଂ ପଞ୍ଜାବକୁ ଧ୍ୱଂସ କରିବା ପାଇଁ ଚୂଡ଼ାନ୍ତ ନିଷ୍ପତ୍ତି ନେଇସାରିଥିଲେ ।

ପଞ୍ଜାବ ସରକାର ବାହାରକୁ ଖବର ପଠାଇବାରେ କଟକଣା ଜାରି କଲେ; ଯଦ୍ୱାରା ତାଙ୍କ ଅତ୍ୟାଚାରର କୌଣସି ଖବର ଜଣା ନ ପଡ଼େ । କେହି ପଞ୍ଜାବରୁ ବାହାରକୁ ଯାଇ ପାରୁ ନ ଥିଲେ କିମ୍ବା ବାହାରୁ ସେଠାକୁ ଆସି ପାରୁ ନ ଥିଲେ । ଗାନ୍ଧିଜୀ ଯେତେବେଳେ ପଞ୍ଜାବ ଯିବାକୁ ବାହାରିଲେ ତାଙ୍କୁ ଦିଲ୍ଲୀରେ ହିଁ ଗିରଫ କରି ଅହମଦାବାଦ ପଠାଇ ଦିଆଗଲା ।

ତେବେ ଏ ଖବର କେତେ ଦିନ ବା ଲୁଚି ରହନ୍ତା ? ଧୀରେ ଧୀରେ ସାରା ଭାରତରେ ଖବର ବ୍ୟାପିଗଲା ଓ ଲୋକଙ୍କ ହୃଦୟରେ ଉତ୍ତେଜନା ସୃଷ୍ଟି ହେଲା ।

## ଗାନ୍ଧିଜୀ ଓ ସତ୍ୟାଗ୍ରହ ଆନ୍ଦୋଳନ

ଅପ୍ରେଲ 1919 ମସିହାରେ ଗାନ୍ଧିଜୀ ସତ୍ୟାଗ୍ରହ କରିବେ ବୋଲି ସରକାରଙ୍କୁ ଯେଉଁ ଧମକ ଦେଇଥିଲେ ତାହାକୁ ସେ ସେହି ସମୟରେ ହିଁ ପ୍ରତ୍ୟାହୃତ କରିନେଇଥିଲେ । କାରଣ ନିଜର



[ଜାଲିଆନାୱାଲାବାଗ ସ୍ମୃତିସ୍ତମ୍ଭ]

ଅହିଂସାତ୍ମକ ପ୍ରକ୍ରିୟାରେ ଲୋକମାନଙ୍କୁ ପ୍ରସ୍ତୁତ କରିବାର ସୁଯୋଗ ସେ ପାଇ ନ ଥିଲେ । କିନ୍ତୁ ବର୍ତ୍ତମାନ ସେ ଦେଖିଲେ ସେ ଏଥିପାଇଁ ଉପଯୁକ୍ତ ସମୟ ଆସି ପହଞ୍ଚିସାରିଲାଣି । ସେ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଦେଲେ । କଂଗ୍ରେସ ମଧ୍ୟ 1920 ମସିହାରେ ତାଙ୍କୁ ନିଜର ନେତା ରୂପେ ବାଛିନେଇଥିଲେ । ଦୁର୍ଭାଗ୍ୟବଶତଃ ଠିକ୍ ସେହି ସମୟରେ ଦେଶର ସବୁଠାରୁ ତେଜସ୍ୱୀ ନେତା ଲୋକମାନ୍ୟ ତିଲକଙ୍କର ମୃତ୍ୟୁ ହେଲା ଏବଂ ସାରା ଦେଶରେ ଶୋକଗ୍ରସ୍ତ ଖେଳିଗଲା । ଅବଶ୍ୟ ଗାନ୍ଧିଜୀଙ୍କଠାରୁ ନୂତନ ନେତୃତ୍ୱ ଓ ନୂତନ ପ୍ରେରଣା ମିଳିଲା ।

ପୁଣି ଏକ ନୂତନ ସ୍ପନ୍ଦନ ଆସିଲା । ସାରା ଭାରତରେ ଖେଳିଗଲା ଉତ୍ସାହର ଏକ ନୂତନ ଲହରୀ—କିଛି କରି ଦେଖାଇବା ପାଇଁ ସଂକଳ୍ପ, ଦେଶକୁ ମୁକ୍ତ କରିବା ପାଇଁ ଶ୍ରେଷ୍ଠ ପ୍ରତିଜ୍ଞା ।

ସର୍ଫରୋଶୀ କି ତମନ୍ନା ଅବ୍ ହମାରେ ଦିଲ୍ ମେଁ ହୈ
ଦେଖ୍‌ନା ହୈ ଜୋର୍ କିତ୍‌ନା ବାଜୁ ଏ କାତିଲ୍ ମେଁ ହୈ ॥

ଏହି ଗୀତଟି ପ୍ରତ୍ୟେକ ବ୍ୟକ୍ତିଙ୍କ ମୁଖରେ ଥିଲା । ଏହାର ଅର୍ଥ ଥିଲା—'ଏବେ ତ ଆମେ ନିଜର ମୁଣ୍ଡ ବଳି ଦେବାର ସିଦ୍ଧାନ୍ତ ନେଇସାରିଛୁ, ଦେଖାଯାଉ ହତ୍ୟାକାରୀରେ କେତେ ଶକ୍ତି ଅଛି ।' ଶତକୁଶତ ଲୋକେ ନିଜ ଜୀବନକୁ ପାଣି ଛଡ଼େଇ ସତ୍ୟାଗ୍ରହ ଆନ୍ଦୋଳନରେ ମାତିଯାଇଥିଲେ ।

ନିଜ ନିଜ ନେତାଙ୍କ ଆହ୍ୱାନରେ ହଜାର ହଜାର ବିଦ୍ୟାର୍ଥୀ ସ୍କୁଲ କଲେଜ ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଉଥିଲେ ବା ନୂଆ ନୂଆ ଖୋଲାଯାଉଥିବା ରାଷ୍ଟ୍ରୀୟ ବିଦ୍ୟାପୀଠରେ ପଢ଼ିବାକୁ ଲାଗିଲେ । ହଜାର ହଜାର ଓକିଲ ଓକିଲାତି ଛାଡ଼ିଦେଲେ ଏବଂ ଦେଶସେବାର ବ୍ରତ ନେଲେ । ଏମାନଙ୍କ ମଧ୍ୟରେ ମୋତିଲାଲ ନେହେରୁ ଏବଂ ଚିତ୍ତରଞ୍ଜନ ଦାସଙ୍କ ଭଳି ମଧ୍ୟ ଓକିଲ ଥିଲେ ଯେଉଁମାନଙ୍କର ଆୟ ରାଜା ମହାରାଜାଙ୍କ ତୁଳନାରେ କିଛି କମ୍ ନ ଥିଲା । ରାଜକୀୟ ସମ୍ଭୋଗରେ ରହୁଥିବା ଜବାହରଲାଲ ନେହେରୁଙ୍କ ଭଳି ନବ ଯୁବକ ମଧ୍ୟ ସାରା ସୁଖ ଐଶ୍ୱର୍ଯ୍ୟ ପରିତ୍ୟାଗ କଲେ ଏବଂ ଗ୍ରାମେ ଗ୍ରାମେ ଅସହଯୋଗର ପ୍ରଚାର କରିବାକୁ ଲାଗିଲେ ।

ମହାଯୁଦ୍ଧ ପରେ ଦେଶର ଶାସନରେ ଭାରତୀୟଙ୍କୁ କିଛି ଭାଗ ଦେବା ପାଇଁ ଇଂରେଜ ସରକାର ପରାମର୍ଶଦାତା ପରିଷଦ ସ୍ଥାପନ କଲେ । ଗାନ୍ଧିଜୀଙ୍କ କହିବା ଅନୁସାରେ ପରିଷଦ ପାଇଁ ହେଉଥିବା ନିର୍ବାଚନକୁ ଲୋକମାନେ ବର୍ଜନ କଲେ । ଭୋଟ ଦେବା ଲୋକଙ୍କ ତୁଳନାରେ ଭୋଟ ନଦେବା ଲୋକଙ୍କ ସଂଖ୍ୟା ଅଧିକ ଥିଲା । କେବଳ ଏତିକି ନୁହେଁ, ଗାନ୍ଧିଜୀ ବିଦେଶୀ ବସ୍ତ୍ର ବର୍ଜନ କରିବା ପାଇଁ ଜନତାକୁ ଆହ୍ୱାନ ଦେଲେ । ଏହା ଇଂରେଜମାନଙ୍କ ସ୍ୱାର୍ଥ ଉପରେ

ସବୁଠାରୁ ବଡ଼ ଆଘାତ ଥିଲା । ଇଂଲଣ୍ଡର କାରଖାନାଗୁଡ଼ିକରେ ତିଆରି ହେଉଥିବା ବିଦେଶୀ ବସ୍ତ୍ର ଭାରତକୁ ବହୁତ ଆସୁଥିଲା ଏବଂ ଇଂରେଜମାନଙ୍କୁ ସବୁଠାରୁ ବେଶି ଲାଭ ଏହି ବ୍ୟବସାୟରୁ ମିଳୁଥିଲା । ଏହାକୁ ନିପାତ କରିବା ପାଇଁ ସ୍ତ୍ରୀଲୋକମାନେ, ଏପରିକି ପିଲାମାନେ ମଧ୍ୟ ପ୍ରତି ଘରକୁ ଯାଇ ଲୋକଙ୍କୁ ଅନୁରୋଧ କରି ବିଦେଶୀ ବସ୍ତ୍ର ସଂଗ୍ରହ କରୁଥିଲେ ଏବଂ ଛକ ଜାଗାରେ ପୋଡ଼ିଦେଉଥିଲେ । ଅତ୍ୟନ୍ତ ମୂଲ୍ୟବାନ ବିଦେଶୀ ବସ୍ତ୍ର ପାଇଁ ମଧ୍ୟ ଲୋକଙ୍କର କୌଣସି ଲୋଭ ନ ଥିଲା ଏବଂ ସେ ସବୁ ନିଆଁକୁ ଫୋପାଡ଼ି ଦେଉଥିଲେ । ବିଦେଶୀ ବସ୍ତ୍ର ପିନ୍ଧିବା ଲଜ୍ଜାକର ହୋଇଥିଲା । ଯେଉଁମାନେ ବିଦେଶୀ ବସ୍ତ୍ର ପିନ୍ଧୁଥିଲେ ଲୋକେ ତାଙ୍କୁ ଘୃଣାଦୃଷ୍ଟିରେ ଦେଖୁଥିଲେ ।



ଗାନ୍ଧୀଜୀ ବର୍ତ୍ତମାନ ସବୁ ଦେଶଭକ୍ତମାନଙ୍କୁ ଖଦଡ଼ ପିନ୍ଧିବା ପାଇଁ ପରାମର୍ଶ ଦେଲେ—ହାତକଟା ସୂତା ଓ ହାତରେ ବୁଣା ହୋଇଥିବା ମୋଟା ଲୁଗା । ଏହି ଲୁଗା ସେତେବେଳେ ଗାଁ ଗଣ୍ଡାରେ ବହୁ ସଂଖ୍ୟକ ଦରିଦ୍ର ଲୋକେ ପିନ୍ଧୁଥିଲେ । ଗାନ୍ଧୀଜୀ ନିଜେ ମଧ୍ୟ ଖଦଡ଼ର ଧୋତି ଓ କୁର୍ତ୍ତା ଏବଂ ମୁଣ୍ଡରେ ପଗଡ଼ି ବଦଳରେ ଖଦଡ଼ ଟୋପି ପିନ୍ଧିବାକୁ ଆରମ୍ଭ କଲେ । ଏହି ଟୋପି 'ଗାନ୍ଧିଟୋପି' ନାମରେ ଦେଶସାରା ପ୍ରସିଦ୍ଧ ହୋଇଗଲା । ଆଜିକାଲିକାର ସୁନ୍ଦର ବଗପକ୍ଷୀ ଭଳି ଧଳା ଖଦଡ଼ ସେତେବେଳେ ତିଆରି ହେଉନଥିଲା । କିନ୍ତୁ ସବୁ ଦେଶଭକ୍ତ ସେହି ମୋଟା ଖଦଡ଼ ପିନ୍ଧିବାକୁ ଲାଗିଲେ ଏବଂ ସେମାନଙ୍କ ମଧ୍ୟରୁ ଧନୀ ଦରିଦ୍ର ବାଛିବା ମୁସ୍କିଲ ହୋଇଉଠିଲା ।

ଏହି ଅପୂର୍ବ ଜନଜାଗରଣ ଦେଖି ଗାନ୍ଧୀଜୀଙ୍କର ମଧ୍ୟ ଆନନ୍ଦର ସୀମା ରହିଲା ନାହିଁ । କେବଳ ଯଦି ଲୋକେ ତାଙ୍କର ସର୍ତ୍ତଗୁଡ଼ିକୁ ପୂରଣ କରନ୍ତି ସେ ଗୋଟାଏ ବର୍ଷ ମଧ୍ୟରେ ସ୍ୱରାଜ୍ୟ ଦେବାର ପ୍ରତିଶ୍ରୁତି ଦେଲେ । ସର୍ତ୍ତଗୁଡ଼ିକ ଥିଲା—ଲୋକମାନ୍ୟ ତିଳକଙ୍କର ସ୍ମୃତିରେ ଖୋଲାଯାଇଥିବା ତିଳକ ସ୍ୱରାଜ୍ୟ ପାଣ୍ଠି ପାଇଁ ଏକକୋଟି ଟଙ୍କାର ଚାନ୍ଦା ସଂଗ୍ରହ, କଂଗ୍ରେସରେ ଏକକୋଟି ସଭ୍ୟ ସଂଗ୍ରହ, ଦେଶସାରା ଅତି କମ୍‌ରେ କୋଡ଼ିଏଲକ୍ଷ ଚରଖାର ବ୍ୟବହାର, ହିନ୍ଦୁ ସମାଜରୁ ଅସ୍ପୃଶ୍ୟତା ନିବାରଣ ଏବଂ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ସମ୍ପୂର୍ଣ୍ଣ ଏକତା ସ୍ଥାପନ ।

ମୁସଲମାନମାନେ ଏହି ଆନ୍ଦୋଳନରେ ଆରମ୍ଭରୁ ଗାନ୍ଧୀଜୀଙ୍କ ପତାକା ତଳେ ଥିଲେ । ଏହାର ପ୍ରଧାନ କାରଣ ଥିଲା, ମହାଯୁଦ୍ଧରେ ଜର୍ମାନୀ ସହ ତୁର୍କିର ମଧ୍ୟ ପରାଜୟ ହୋଇଥିଲା ଏବଂ ତାକୁ ନିଜ ସାମ୍ରାଜ୍ୟର ବହୁ କିଛି ଅଂଶ ହରାଇବାକୁ ପଡ଼ିଥିଲା । ତୁର୍କିର ଖଲିଫା ମୁସଲମାନ-ଜଗତର ଧର୍ମଗୁରୁ ଥିଲେ । ମହାଯୁଦ୍ଧ ଆରମ୍ଭ ହେବା ପରେ ଯେତେବେଳେ ତୁର୍କି ଜର୍ମାନୀସହ ଯୋଗଦେଇଥିଲା, ସେତେବେଳେ ଭାରତରେ ମୁସଲମାନମାନଙ୍କର ସହଯୋଗ ପାଇବା ପାଇଁ ଇଂରେଜ ସରକାର ପ୍ରତିଶ୍ରୁତି ଦେଇଥିଲେ ଯେ ଖଲିଫାଙ୍କ ପ୍ରଭାବ କୌଣସି ମତେ ଊଣା କରାଯିବ ନାହିଁ । କିନ୍ତୁ ଲଢ଼େଇ ଶେଷ ହେବା ପରେ ଏହି ପ୍ରତିଶ୍ରୁତିକୁ ଭଙ୍ଗ କରିଦିଆଗଲା । ଭାରତର ମୁସଲମାନମାନେ ସେତେବେଳେ ଖଲିଫାଙ୍କୁ ଅଧିକାର ଦେବାପାଇଁ "ଖିଲାଫତ୍ ଆନ୍ଦୋଳନ" ଚଳାଇଲେ । ଅସହଯୋଗ ଓ ଖିଲାଫତ୍ ଆନ୍ଦୋଳନ ଏକସ ଚାଲିଲା । ଖିଲାଫତ୍‌ର ନେତା ମହମ୍ମଦ ଅଲ୍ଲି ସୌକତ ଅଲ୍ଲି ଗାନ୍ଧୀଜୀଙ୍କ ପତାକା ତଳେ ଆସିଗଲେ । ସାରା ଦେଶରେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଭ୍ରାତୃତ୍ୱ ଭାବ ଜନ୍ମିଲା । ମୁସଲମାନମାନେ ହିନ୍ଦୁ ନେତାମାନଙ୍କୁ ମସ୍‌ଜିଦ୍‌ରେ ଭାଷଣ ଦେବାପାଇଁ ଡାକିଲେ ଏବଂ ହିନ୍ଦୁମାନେ ମୁସଲମାନମାନଙ୍କ ପଙ୍ଗତରେ ବସି ଖାଇଲେ । ଇଂରେଜ ସରକାର ସବୁଆଡ଼ୁ ନିରାଶ ହୋଇ ବର୍ତ୍ତମାନ ଏହି ଦେଶର ରାଜଭକ୍ତ ଲୋକଙ୍କ ସାହାଯ୍ୟ ଲୋଡ଼ିଲେ । ଏମାନଙ୍କୁ



ବିଦେଶୀ ସରକାର ଆହୁରି ବଡ଼ ବଡ଼ ଲୋଭ ଦେଖାଇଲେ, ତାଙ୍କର ଶକ୍ତି ବଢ଼ାଇଲେ ଏବଂ ଏ ସମସ୍ତଙ୍କର ନୈତିକ ସାହସ ବଢ଼ାଇବା ପାଇଁ ସମ୍ରାଟ ପଞ୍ଚମ ଜର୍ଜଙ୍କ ଜ୍ୟେଷ୍ଠପୁତ୍ର 'ପ୍ରିନ୍ସ୍ ଅଫ୍ ୱେଲସ୍'ଙ୍କୁ ଭାରତ ଗସ୍ତ କରିବାକୁ ପଠାଇଲେ ।

କିନ୍ତୁ ଏଥର ଫଳ ମଧ୍ୟ ଓଲଟା ହେଲା । ଯୁବରାଜ ଯେଉଁ ଦିନ ନିଜ ଜାହାଜରୁ ବମ୍ବେରେ ଅବତରଣ କଲେ, ସେଦିନ ସାରା ଦେଶରେ ପୂର୍ଣ୍ଣ ହରତାଳ କରାଗଲା । ଏପରି ସଫଳ ହରତାଳ ପୂର୍ବେ ଏ ଦେଶରେ କେବେହେଲେ ହୋଇ ନଥିଲା । ଯେଉଁ ଜାଗାକୁ "ପ୍ରିନ୍ସ ଅଫ୍ ୱେଲସ୍" ଗଲେ ସେହି ସ୍ଥାନମାନଙ୍କରେ କଳାପତାକା ପ୍ରଦର୍ଶନ କରିବାର ପ୍ରସ୍ତୁତ କରାଗଲା । ଏହାକୁ ବନ୍ଦ କରିବାକୁ ସରକାରଙ୍କୁ ଅନେକ ବ୍ୟକ୍ତିଙ୍କୁ ଗିରଫ କରିବାକୁ ପଡ଼ିଲା । ଗାନ୍ଧୀଜୀଙ୍କୁ ଛାଡ଼ି ଦେଶର ପ୍ରାୟ ସବୁ ବଡ଼ ନେତା ସେତେବେଳେ ଜେଲରେ ବନ୍ଦୀ ହୋଇସାରିଥିଲେ—ଲାଲା ଲଜପତ୍ ରାୟ, ପଣ୍ଡିତ ମୋତିଲାଲ ନେହେରୁ ଏବଂ ତାଙ୍କ ପୁତ୍ର ଜବାହରଲାଲ ନେହେରୁ, ଚିତ୍ତରଞ୍ଜନ ଦାସ ଏବଂ ତାଙ୍କର ପତ୍ନୀ ବାସନ୍ତୀ ଦେବୀ ଇତ୍ୟାଦି । ଏଣେ ଗାନ୍ଧୀଜୀଙ୍କ ସତ୍ୟା

ପାଳନ କରିବା ପାଇଁ ହଜାର ହଜାର, ଲକ୍ଷ ଲକ୍ଷ ଲୋକ ଜୋର୍‌ସୋର୍‌ରେ ଗାଁଗଣ୍ଡାରେ କାମ ଚଳାଇଥିଲେ । ଦେଖୁ ଦେଖୁ ତିଳକ୍ ସ୍ୱରାଜ୍ୟ ପାଣ୍ଠି ପାଇଁ ଏକକୋଟିରୁ ଅଧିକ ଟଙ୍କା ସଂଗ୍ରହ ହୋଇଗଲା । ଅନ୍ତର ମଧ୍ୟ ସମସ୍ତ ସର୍ତ୍ତ ପୂରଣ ହେବା ପ୍ରାୟ ପ୍ରତୀତ ହେଉଥିଲା । ଏହି କାରଣରୁ ଗାନ୍ଧୀଜୀଙ୍କ ଉପରେ ଚାରିଆଡ଼ୁ ଚାପ ଦିଆଯାଉଥିଲା ଯେ, ସରକାରଙ୍କ ବିରୁଦ୍ଧରେ ବର୍ତ୍ତମାନ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ କରିଦିଆଯାଉ । ଚାଷୀ ନିଜ ଜମିର ଖଜଣା ଦେବା ବନ୍ଦ କରିଦେଉ ।

ସରକାରଙ୍କ ଉପରେ ଏହାଦ୍ୱାରା ଯେ ବିରାଟ ଚାପ ପଡ଼ିବ ଏଥିରେ ସନ୍ଦେହ ନାହିଁ । ସରକାରଙ୍କ ଆୟର ସବୁଠାରୁ ବଡ଼ ରାସ୍ତା ଏହାଦ୍ୱାରା ବନ୍ଦ ହୋଇଯାଇଥାଆନ୍ତା । ଗାନ୍ଧୀଜୀ ସର୍ବପ୍ରଥମେ ଗୁଜରାଟରେ ପରୀକ୍ଷାମୂଳକଭାବେ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ କରିବାର ନିଷ୍ପତ୍ତି କଲେ । ବ୍ୟାପକ ପ୍ରସ୍ତୁତି ଚାଲିଲା ।

## ଚୌରୀ-ଚୌରା ଏବଂ କାକୋରୀ ଷଡ଼ଯନ୍ତ୍ର

ସରକାରଙ୍କ ସମ୍ମୁଖରେ ବର୍ତ୍ତମାନ କେବଳ ଏକମାତ୍ର ରାସ୍ତା ରହିଥିଲା—ଲୋକଙ୍କ ଉପରେ ଏପରି ଅତ୍ୟାଚାର କରାଯିବ ଯାହାଦ୍ୱାରା ସେମାନେ ଉତ୍ତ୍ୟକ୍ତ ହୋଇ ହିଂସାତ୍ମକ କାଣ୍ଡ କରିବେ ଓ ଗାନ୍ଧୀଜୀଙ୍କ ସତ୍ୟାଗ୍ରହର ମୌଳିକ ଭିତ୍ତି ଉପରେ ଆଞ୍ଚ ଆସିବ । ଅବଶେଷରେ ଏଥିରେ ସେମାନେ ସଫଳତା ଲାଭ କଲେ ଏବଂ କେତେକ ଛୋଟ ଛୋଟ ହିଂସାତ୍ମକ ଘଟଣା ପରେ ସବୁଠାରୁ ବଡ଼ ଘଟଣା ଗୋରଖପୁର ଜିଲ୍ଲାର ଚୌରୀ-ଚୌରା ନାମକ ସ୍ଥାନରେ ଘଟିଗଲା । ଅତ୍ୟାଚାର-ପ୍ରପୀଡ଼ିତ ଉତ୍ତେଜିତ ଜନତା ଗୋଟିଏ ପୋଲିସ ଥାନାରେ ନିଆଁ ଲଗାଇଦେଲେ ଏବଂ କେତେ ସିପାହିଙ୍କୁ ଜୀବନ୍ତ ପୋଡ଼ିଦେଲେ ।

ଗାନ୍ଧୀଜୀ ଦେଖିଲେ ଯେ ଖଜଣା ବନ୍ଦ କରିବାର ସମୟ ଏବେ ପୂରା ଆସିନାହିଁ; ସେହି ଆନ୍ଦୋଳନକୁ ସରକାର ଯେକୌଣସି ଉପାୟରେ ଦମନ କରିବାକୁ ଚେଷ୍ଟା କରିବେ । ଯଦି ଲୋକେ ଉତ୍ତେଜିତ ହୋଇ ସରକାରୀ -ଅତ୍ୟାଚାରର ଜବାବ ମାରପିଟରେ ଆରମ୍ଭ କରି ଦିଅନ୍ତି, ତେବେ ଅବସ୍ଥା ଅସମ୍ଭାଳ ହେବ ।

ଖଜଣାବନ୍ଦ ଆନ୍ଦୋଳନ ଯେତେବେଳେ ଆରମ୍ଭ ହୋଇନାହିଁ ସେତେବେଳେ ଦେଶର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ଘୋର ନିରାଶା ଘୋଟିଗଲା । ସରକାର ଏହି ଅବସରରେ ଗାନ୍ଧୀଜୀଙ୍କୁ ଗିରଫ କରି ଛଅବର୍ଷ ପାଇଁ ଜେଲ୍‌ରେ ବନ୍ଦୀ କରିଦେଲେ । ଏହା 1922 ମସିହାର କଥା ।

ଗାନ୍ଧୀଜୀ ସେହି ସମୟଠାରୁ ଭଦ୍ରଲୋକ ପୋଷାକ ପରିତ୍ୟାଗ କରି ଗାଉଁଲି ଦରିଦ୍ର ଚାଷୀପରି ଖାଲି ଦେହରେ ରହିବାକୁ ଲାଗିଲେ—ନା ମୁଣ୍ଡରେ ଟୋପି, ନା ଦେହରେ



[ଜେଲ୍ ଭିତରେ ଗାନ୍ଧୀଜୀ]

ପଞ୍ଜାବ । ଧୋତି ଜାଗାରେ କେବଳ ଏକ ଖଦି ଷ୍ଟ୍ରେଟ ଲୁଗା ପିନ୍ଧିଥିଲେ ଯାହାକି ଆଣ୍ଠୁ ପର୍ଯ୍ୟନ୍ତ ପଡ଼ୁନଥିଲା । ସେହି ରୂପରେ ତାଙ୍କୁ ଅଦାଲତରେ ହାଜର କରାଗଲା । କିନ୍ତୁ ତାହା ସତ୍ତ୍ୱେ ତାଙ୍କୁ ଦେଖି ସାରା ଅଦାଲତ ତାଙ୍କ ସମ୍ମାନରେ ଉଠି ଠିଆହୋଇଗଲେ ।

ଗାନ୍ଧୀଜୀ ଗୋରା ଅଦାଲତ ଆଗରେ ନିଜର ମକଦ୍ଦମା ସମ୍ବନ୍ଧରେ ଯାହା ବୟାନ ଦେଲେ ତାହା ଅମର ହୋଇ ରହିଗଲା । ସେ କହିଲେ :

ମୁଁ ଜାଣେ ଯେ ମୁଁ ନିଆଁ ସହିତ ଖେଳ ଖେଳୁଥିଲି । ମୁଁ ଏହା ଜାଣିଶୁଣି କରୁଥିଲି ଏବଂ ଯଦି ଆପଣ ମୋତେ କୌଣସି ଦଣ୍ଡ ନ ଦେଇ ଛାଡ଼ିଦିଅନ୍ତି ତେବେ ବି ମୁଁ



ସେ ସବୁ ପୁଣି କରିବ···ମୁଁ ଜାଣିଛି ଯେ ମୋର ଦେଶବାସୀମାନେ ବେଳେ ବେଳେ ଅସଂଯତ ହୋଇ କେତେକ କାମ କରିଛନ୍ତି । ସେମାନଙ୍କ ପାଇଁ ମୁଁ ଦୁଃଖିତ ଏବଂ ଏଥିପାଇଁ ମୁଁ ଆପଣଙ୍କଠାରୁ ଦଣ୍ଡର କୌଣସି ହ୍ରାସ ଚାହୁଁ ନାହିଁ···ବିଚାରପତି ମହୋଦୟ, ଆପଣଙ୍କ ଆଗରେ ଦୁଇଟି ରାସ୍ତା ଅଛି । ଆପଣ ଆପଣଙ୍କ ପଦରୁ ଇସ୍ତଫା ଦିଅନ୍ତୁ କିମ୍ବା ଯେକୌଣସି କଠିନ ଦଣ୍ଡ ମୋତେ ଦିଅନ୍ତୁ··· ।

ଗାନ୍ଧୀଜୀଙ୍କୁ ଜେଲ୍‌ରେ ବନ୍ଦୀ କରିଦିଆଯିବା ପରେ ଦେଶବାସୀ ପୁଣି ନିଜକୁ ଅସହାୟ ମନେକଲେ । ସାରା ଦେଶ ଏଥିରେ ଶୋକପ୍ରକାଶ କଲା । କିନ୍ତୁ ଗାନ୍ଧୀଜୀଙ୍କ ଆଦେଶ ପାଳନ କରାଯାଇ ପୂର୍ଣ୍ଣ ଶାନ୍ତି ରକ୍ଷା କରାଗଲା । ଇଂରେଜମାନେ ଭାବିନେଲେ ଯେ ସେମାନଙ୍କର ନୀତି ସଫଳ ହେଲା, ଲୋକଙ୍କ ଉତ୍ସାହକୁ ଦବାଇ ଦିଆଗଲା । ଏପରିକି କୌଣସି ଜଣେ ଗୋରା ଲୋକ କହିଥିଲେ, "ଗାନ୍ଧୀଜୀଙ୍କ ଗିରଫ୍‌ଦାରି ପରେ କୌଣସି କୁକୁର ମଧ୍ୟ ଭୁକିଲା ନାହିଁ ।" ତାଙ୍କର ଏପରି ଭାବିବା ଯେ କେତେଦୂର ଭ୍ରମାତ୍ମକ ଥିଲା ତାହା ତାଙ୍କୁ ପରେ ଜଣାଗଲା ।

1922 ମସିହାର ଆରମ୍ଭରେ ଗାନ୍ଧୀଜୀଙ୍କୁ ଜେଲ୍‌ରେ ବନ୍ଦୀ କରି ଦିଆଯାଇଥିଲା । କିନ୍ତୁ ଦୁଇବର୍ଷ ପୂର୍ଣ୍ଣ ନ ହେବା ପୂର୍ବରୁ ସେ ଭୀଷଣ ବେମାର ପଡ଼ିଲେ । ଜେଲ୍‌ରେ ହିଁ ତାଙ୍କ ପେଟରେ ଅସ୍ତ୍ରୋପଚାର କରାଗଲା । ସେହି ସମୟରେ ସାରା ଦେଶରେ ଯେପରି ଚିନ୍ତା ଏବଂ ବ୍ୟାକୁଳତା

[ପଣ୍ଡିତ ମୋତିଲାଲ ନେହେରୁ]

ଉପୁଜିଲ ସେଥିରେ ଇଂରେଜ ସରକାର ପୁଣି ଉଦ୍‌ବିଗ୍ନ ହୋଇ ପଡ଼ିଲେ । ତାଙ୍କର ମନେହେଲା ଯଦି ଜେଲରେ ଗାନ୍ଧିଜୀଙ୍କର ମୃତ୍ୟୁ ହୋଇଯାଏ ତେବେ ଭାରତରେ ଏଭଳି ଏକ ଜ୍ୱାଳାମୁଖୀ ବିସ୍ଫୋରଣ ହେବ ଯାହାକୁ କେହି କେବେ ଲିଭାଇ ପାରିବେ ନାହିଁ । କିନ୍ତୁ ଦେଶର ସୌଭାଗ୍ୟରୁ ଅସ୍ତ୍ରୋପଚାର ସଫଳ ହେଲା ଏବଂ ତାହା ପରେ ତୁରନ୍ତ ସରକାର ତାଙ୍କୁ ଜେଲରୁ ମୁକ୍ତକଲେ ।

ଗାନ୍ଧିଜୀଙ୍କୁ ନେଇ କଂଗ୍ରେସ ନେତୃତ୍ୱରେ ପୁଣି ଥରେ ମତାନ୍ତର ହୋଇଥିଲା । ରାଜଗୋପାଳାଚାରୀ, ବଲ୍ଲଭଭାଇ ପଟେଲ ଓ ରାଜେନ୍ଦ୍ର ବାବୁଙ୍କ ଭଳି ନେତା ଗାନ୍ଧିଜୀଙ୍କ କହିବା ଅନୁସାରେ ଲୋକଙ୍କ ମଧ୍ୟରେ ବର୍ତ୍ତମାନ ସୂତା କାମ କରୁଥିଲେ । କିନ୍ତୁ ଚିତ୍ତରଞ୍ଜନ ଦାସ ଏବଂ ମୋତିଲାଲ ନେହେରୁଙ୍କ ଭଳି ନେତା ଅସହଯୋଗ ନୀତିର ପରିବର୍ତ୍ତନ ଚାହୁଁଥିଲେ । ତାଙ୍କର କହିବାର ଥିଲା ଯେ ଅସହଯୋଗ ଆନ୍ଦୋଳନ ପରେ ଜନସାଧାରଣଙ୍କ ମଧ୍ୟରେ ସ୍ୱରାଜ୍ୟ ପାଇଁ ଯେଉଁ ଇଚ୍ଛା ଜନ୍ମିଥିଲା ତାକୁ ଅଗ୍ରସର କରାଇବା ପାଇଁ ଏପରି କିଛି କାମ କରିବା ଦରକାର ଯାହାଦ୍ୱାରା ନିଜର ଶକ୍ତି ବୃଦ୍ଧି ପାଇବ । ଏଥିପାଇଁ ତାଙ୍କର ପରାମର୍ଶ ଥିଲା ଯେ କାଉନସିଲ୍‌ର ପରବର୍ତ୍ତୀ ନିର୍ବାଚନ ବର୍ଜନ କରାନଯାଇ ଅଧିକରୁ ଅଧିକ ସଂଖ୍ୟକ ଲୋକଙ୍କୁ ନିର୍ବାଚିତ କରି ପଠାଯାଉ । ସେମାନେ କାଉନ୍‌ସିଲକୁ ଯାଇ ପ୍ରତ୍ୟେକ ସରକାରୀ ବିଲ୍‌ର ବିରୋଧ କରନ୍ତୁ ଏବଂ ବଜେଟ ମଞ୍ଜୁର କରାଇ ନ ଦିଅନ୍ତୁ । ଏହି କାଉନ୍‌ସିଲ୍‌ଗୁଡ଼ିକ କେବଳ ନାମକୁମାତ୍ର ଥିଲା । ପ୍ରକୃତରେ କେନ୍ଦ୍ରୀୟ ସ୍ତରରେ ଭାଇସ୍‌ରୟଙ୍କର ଏବଂ ପ୍ରଦେଶମାନଙ୍କରେ ଗଭର୍ଣ୍ଣରଙ୍କ ହୁକୁମ କେବଳ ଚାଲୁଥିଲା । ଏହି ନେତାମାନେ ଚାହୁଁଥିଲେ ଯେ ସାରା ଦୁନିଆ ସମ୍ମୁଖରେ ଏହି ନାମକୁମାତ୍ର ଥିବା କାଉନ୍‌ସିଲ୍‌ଗୁଡ଼ିକୁ ପଦାରେ ପକାଇଦେବେ ।



[ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ]

ଗାନ୍ଧୀଜି ଜେଲରୁ ଖଲାସ ହେବା ପରେ ଏହି ଦୁଇ ମତ ପୋଷଣ କରୁଥିବା ନେତାମାନଙ୍କୁ ନିଜ ନିଜ ପନ୍ଥାର ଅନୁସରଣ କରିବା ପାଇଁ ଅନୁମତି ଦେଇଦେଲେ । ସେ ନିଜେ ଭବିଷ୍ୟତ ସଂଗ୍ରାମର ପ୍ରସ୍ତୁତିରେ ଲାଗିପଡ଼ିଲେ, ଯାହାକୁ ସେତେବେଳେ ଖୁବ୍ କମ୍ ଲୋକ ପ୍ରକୃତ ଭାବେ ବୁଝିପାରିଥିଲେ ।

1922 ମସିହାରେ ଗାନ୍ଧୀଜିଙ୍କ ଗିରଫଦାରୀଠାରୁ 1929 ମସିହା ପର୍ଯ୍ୟନ୍ତ— ଭାରତବର୍ଷ ମଧ୍ୟରେ ସ୍ୱରାଜ୍ୟ ଆନ୍ଦୋଳନ ସାମାନ୍ୟ ଧିମେଇ ଯାଇଥିଲା । ଇତିମଧ୍ୟରେ ଦେଶର ନେତାମାନେ ଭିନ୍ନ ଭିନ୍ନ ରାସ୍ତାରେ ଚାଲିବାକୁ ଲାଗିଲେ । କେତେକ ଲୋକ ଗୋଟିଏ ଅଲଗା ସ୍ୱରାଜ୍ୟ ପାର୍ଟି ଗଠନ କରି କାଉନ୍ସିଲ୍‌କୁ ବାହାରିଗଲେ ଏବଂ ସେଠୁ ଇଂରେଜ ସରକାରଙ୍କର ପ୍ରସ୍ତାବ କମ୍ କରାଇବାରେ ଓ ତାଙ୍କୁ ପଦାରେ ପକାଇବାରେ ଲାଗିଗଲେ । କିନ୍ତୁ ଆଉ କିଛି ଲୋକ ଗୁପ୍ତ କ୍ରାନ୍ତିକାରୀମାନଙ୍କର ଷଡ଼ଯନ୍ତ୍ରକୁ ଆହୁରି ବଢ଼ାଇବାରେ ଲିପ୍ତ ରହିଲେ । 1924-25 ମସିହାରେ ଗୁପ୍ତ ବିପ୍ଳବୀମାନଙ୍କର କାର୍ଯ୍ୟକଳାପ ବହୁତ ବଢ଼ିଗଲା ।

[ବିପ୍ଳବୀମାନଙ୍କର ଫାଶୀ]



ବଙ୍ଗଳାଠାରୁ ପଞ୍ଜାବ ପର୍ଯ୍ୟନ୍ତ ସଶସ୍ତ୍ର ବିଦ୍ରୋହ ପାଇଁ ବ୍ୟାପକ ପ୍ରସ୍ତୁତି ଆରମ୍ଭ ହୋଇଗଲା । ପୂର୍ବ-ବଙ୍ଗରେ ଏମାନଙ୍କର ପ୍ରସିଦ୍ଧ ନେତା ଥିଲେ ସୂର୍ଯ୍ୟସେନ । ଏମାନଙ୍କର ଦଳ ସେଠାରେ ପୁଣି ବୋମା ତିଆରି କରିବା କାର୍ଯ୍ୟରେ ବଡ଼ ଉତ୍ସାହର ସହିତ ଲାଗିପଡ଼ିଲେ । ଏଥିପାଇଁ ସେଇଁ ପ୍ରଚୁର ଧନର ଆବଶ୍ୟକତା ଥିଲା ତାହା ବଡ଼ ବଡ଼ ଡକାୟତି କାର୍ଯ୍ୟ ଦ୍ୱାରା ପୂରଣ କରାଯାଉଥିଲା । ଏହି ଦଳ ବହୁତ ଇଂରେଜ ହାକିମଙ୍କୁ ହତ୍ୟା ମଧ୍ୟ କରିଥିଲେ । ଗୋପୀନାଥ ସାହାଙ୍କୁ ସେତେବେଳେ ଜଣେ ଇଂରେଜଙ୍କୁ ମାରିବା ଅପରାଧରେ ଫାଶୀ ଦିଆଯାଇଥିଲା ।

ଉତ୍ତର ପ୍ରଦେଶ (ଯୁକ୍ତପ୍ରଦେଶ), ବିହାର, ଦିଲ୍ଲୀ ଓ ପଞ୍ଜାବରେ ମଧ୍ୟ 1924 ମସିହାରୁ ବିପ୍ଳବୀମାନଙ୍କର ଆନ୍ଦୋଳନ ଖୁବ୍ ଜୋରସୋରରେ ଚାଲିଥିଲା । 1925 ମସିହା ଅଗଷ୍ଟ ମାସରେ ରାମପ୍ରସାଦ ବିସ୍ମିଲଙ୍କ ନେତୃତ୍ୱରେ ତାଙ୍କ ଦଳ ଲକ୍ଷ୍ନୌ ନିକଟରେ ଚଳନ୍ତା ରେଳରେ ଡକାୟତି କରି ସରକାରୀ ଧନ ଲୁଟିକଲେ । ଏହି ଡକାୟତିରେ ସଂପୃକ୍ତ ପ୍ରାୟ ସମସ୍ତ ଲୋକଙ୍କୁ ଧରିନିଆଯାଇଥିଲା । ଏମାନଙ୍କ ବିରୁଦ୍ଧରେ ମକଦ୍ଦମା ଚାଲିଲା ଯାହାକି "କାକୋରୀ ଷଡ଼ଯନ୍ତ୍ର କେଶ୍" ନାମରେ ପ୍ରସିଦ୍ଧ । ରାମପ୍ରସାଦ ବିସ୍ମିଲ ଓ ଅସ୍ଫାକୁଲ୍ଲା ଖାଁଙ୍କ ସହିତ କେତେକ ବିପ୍ଳବକାରୀଙ୍କୁ ଫାଶୀ ଦିଆଯାଇଥିଲା ଓ କେତେକଙ୍କୁ ଦୀର୍ଘ ଦିନ ଧରି ଜେଲ୍‌ଦଣ୍ଡ ଭୋଗ କରିବାକୁ ପଡ଼ିଥିଲା ।

ଗାନ୍ଧୀଜୀ ଜେଲ୍‌ରୁ ଖଲାସ ହୋଇ ଅସିଲାବେଳକୁ ଦେଶର ଏହିପରି ବାତାବରଣ ଥିଲା । ଅନ୍ୟ ଏକ କାରଣ ଯୋଗୁ ଗାନ୍ଧୀଜୀଙ୍କ ମନରେ ଭୀଷଣ ଆଘାତ ପାଇଥିଲେ । ସେ ଲକ୍ଷ୍ୟ କରୁଥିଲେ ଯେ ମୁସଲମାନ ନେତାମାନେ କଂଗ୍ରେସଠାରୁ ଦୂରେଇ ଯାଉଥିଲେ । ଭାରତରେ ଅସହଯୋଗ ଆନ୍ଦୋଳନ ବନ୍ଦ ହେଉ ହେଉ ତୁର୍କିରେ ଏକ ଗଣ-ବିପ୍ଳବ ହୋଇଯାଇଥିଲା ଓ ତାହାର ନେତା ମୁସ୍ତାଫା କମାଲ୍ ପାଶା ଖଲିଫାଙ୍କର ଅବଶେଷ ଶକ୍ତି ଛଡ଼ାଇ ନେଇଥିଲେ । ଏହା ପରେ ଭାରତରେ ମୁସଲମାନମାନଙ୍କ ଲାଗି ଖିଲାଫତ୍ ଆନ୍ଦୋଳନ ନିରର୍ଥକ ହୋଇଯାଇଥିଲା ।

ଇଂରେଜମାନେ ସେହି ସମୟରେ ଏଠାକାର ମୁସଲମାନମାନଙ୍କୁ ମତାଇବା ଆରମ୍ଭ କରି ଦେଲେ । ସେମାନେ ପ୍ରଚାର କରାଇଲେ ଯେ ଦେଶକୁ ଯଦି ସ୍ୱରାଜ୍ୟ ମିଳିଯାଏ ତେବେ ଏଠାରେ ହିନ୍ଦୁ ରାଜ୍ୟ ହୋଇଯିବ ଓ ମୁସଲମାନମାନଙ୍କ ସତ୍ତା ଲୋପ ପାଇଯିବ । ଧୀରେ ଧୀରେ ମୁସଲମାନମାନଙ୍କର କେତେ ଜଣ ନେତା, ଯେଉଁମାନେ ପୂର୍ବରୁ କଂଗ୍ରେସରେ ଥିଲେ, ସେମାନେ କଂଗ୍ରେସରୁ ଦୁରେଇ ଯାଇଥିଲେ । ଏହି ନେତାମାନଙ୍କ ମଧ୍ୟରେ କେବଳ ଜିନ୍ନା ସାହେବ ନୁହନ୍ତି, ମହମ୍ମଦ ଅଲ୍ଲୀ ଓ ସଉକତ ଅଲ୍ଲୀ ମଧ୍ୟ ଥିଲେ ।

ତା ପରେ ନିହାତି ଛୋଟ ଛୋଟ କଥାରେ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ କଳହ ଉପୁଜିଲା । କେତେ ଥର ତ ଭୀଷଣ ରକ୍ତପାତ ମଧ୍ୟ ହୋଇଯାଇଥିଲା । ଗାନ୍ଧୀଜୀ ଜେଲରୁ ଖଲାସ ହେବା ପରେ ପରେ ଦେଶର କେତେକ ଭାଗରେ ବହୁତ ବଡ଼ ଗଣ୍ଡଗୋଳ ହୋଇଥିଲା । ଗାନ୍ଧୀଜୀ ଏ ସବୁ କେବେହେଲେ କଳ୍ପନା ମଧ୍ୟ କରି ପାରି ନ ଥିଲେ । ବିଦେଶୀଙ୍କ ସହିତ ଲଢ଼ିବା ପାଇଁ ହତିଆର ତ ସେ ଉଦ୍‌ଭାବନ କରିଥିଲେ, କିନ୍ତୁ ଭାଇ ଭାଇ ମଧ୍ୟରେ ହେଉଥିବା ଲଢ଼େଇକୁ କେମିତି ବନ୍ଦ କରାଯାଇପାରେ ?

## ସାଇମନ୍ କମିଶନ୍

ହିନ୍ଦୁ ମୁସଲମାନ ବିବାଦ ଯୋଗୁଁ ଗଭୀର ଦୁଃଖର ସହିତ ଗାନ୍ଧୀଜୀ ଏକୋଇଶ-ଦିନିଆ ଅନଶନ ଘୋଷଣା କଲେ । ସେ ନିଜର ପୁରାତନ ସାଥୀ ମୌଲାନା ମହମ୍ମଦ ଅଲ୍ଲୀଙ୍କ ଘରେ ରହି ଉପବାସ ଆରମ୍ଭ କରିଥିଲେ, ଯେ କି ବର୍ତ୍ତମାନ ତାଙ୍କଠାରୁ ଦୂରେଇ ଯାଇଥିଲେ । ପୂର୍ବ ଅସୁସ୍ଥତା ପରଠାରୁ ତାଙ୍କ ସ୍ୱାସ୍ଥ୍ୟ ତ ସହଜେ ବହୁତ ଖରାପ ହୋଇ ଯାଇଥିଲା, ଏହି ଦୀର୍ଘ ଉପବାସ ପରେ ସେ ବଞ୍ଚିବେ ବୋଲି କେହି ହେଲେ ଆଶା ରଖି ନଥିଲେ । କିଛି ଦିନ ପାଇଁ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ପୁଣି ଭ୍ରାତୃତ୍ୱପୂର୍ଣ୍ଣ ଲକ୍ଷଣ ଦେଖାଗଲା । ହିନ୍ଦୁ ଓ ମୁସଲମାନ ଉଭୟ ତାଙ୍କର ଦୀର୍ଘାୟୁ କାମନା କରି ମନ୍ଦିର ଓ ମସଜିଦ୍‌ମାନଙ୍କରେ ପ୍ରାର୍ଥନା କଲେ । ସବୁ ସମ୍ପ୍ରଦାୟର ନେତାମାନେ ଗାନ୍ଧୀଜୀଙ୍କ ନିକଟକୁ ଆସି ଏକ ରାଜିନାମାର ରୂପରେଖ ପ୍ରସ୍ତୁତ କଲେ । ତାର ଉଦ୍ଦେଶ୍ୟ ଥିଲା ଯେ ସବୁ ସମ୍ପ୍ରଦାୟ ଲୋକେ ଶାନ୍ତିପୂର୍ଣ୍ଣଭାବେ ସହାବସ୍ଥାନ କରିପାରିବେ ।

ଦେଶର ସୌଭାଗ୍ୟକୁ ଗାନ୍ଧୀଜୀ ବଞ୍ଚିଗଲେ । ପୁଣି ଦେଶବ୍ୟାପୀ ସତ୍ୟାଗ୍ରହ ଆନ୍ଦୋଳନ କିପରି ସଫଳ ହେବ ସେହି ପ୍ରସ୍ତୁତିରେ ସେ ମନପ୍ରାଣ ଢାଳିଦେଲେ । ସବୁଠାରୁ ବଡ଼ ଜରୁରୀ ଥିଲା କି ଗାଁ-ଗାଁରେ ସଂଗଠନଗୁଡ଼ିଏ ଗଢ଼ାଯିବ, ଯାହାଦ୍ୱାରା ଉଚିତ ସମୟରେ ସବୁ କର୍ମକର୍ତ୍ତା ଦେଶର ପ୍ରତ୍ୟେକ କୋଣରେ ଗାନ୍ଧୀଜୀଙ୍କ ବାର୍ତ୍ତା ପହଞ୍ଚାଇ ପାରିବେ । ଏହାର ଭିତ୍ତି ସ୍ୱରୂପ ଦୁଇଟି ଜିନିଷ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ଗୋଟିଏ ହେଲା ଅସ୍ପୃଶ୍ୟତା-ନିବାରଣ ଓ ଅନ୍ୟଟି ଚରଖା ଏବଂ ଖଦଡ଼ର ପ୍ରଚାର । ସେ ଦୁଇଟି କାର୍ଯ୍ୟ ଲାଗି ଦୁଇଟି ସଂସ୍ଥା ଗଢ଼ିଦେଲେ ଓ ତାହାକୁ ଚଳାଇବା ଲାଗି ଧନ ସଂଗ୍ରହ କରିବା ଆରମ୍ଭ କରିଦେଲେ । 1928 ଓ 1929 ମସିହାରେ ସେ ସାରା ଦେଶ ଗସ୍ତକଲେ । ରେଳଗାଡ଼ିରେ ସେ ସର୍ବଦା ତୃତୀୟ ଶ୍ରେଣୀ ଡବାରେ ଯାତ୍ରା କରୁଥିଲେ । ଦେଶର ସ୍ୱାଧୀନତା ସେ ଦରିଦ୍ରମାନଙ୍କ ଲାଗି ଚାହୁଁଥିଲେ ଓ

ସେମାନଙ୍କର ସ୍ୱାବଲମ୍ବନ ହେବା ଲାଗି ସେ ମଧ୍ୟ ଦରିଦ୍ରମାନଙ୍କ ପରି ରହୁଥିଲେ । ତାଙ୍କର ଅନୁସରଣକାରୀଙ୍କୁ ମଧ୍ୟ ସେ ସେହିପରି ରହିବାକୁ ନିର୍ଦ୍ଦେଶ ଦେଉଥିଲେ । ସ୍ଥାନେ ସ୍ଥାନେ ସେ ଅଛୁଆଁ ଓ ହରିଜନ ବୋଲାଉଥିବା ଲୋକଙ୍କ ମଧ୍ୟରେ ଭେଦଭାବ ବନ୍ଦ କରିବା ପାଇଁ କର୍ମକର୍ତ୍ତାମାନଙ୍କର ଏକ ଆଶ୍ରମ ଖୋଲିଲେ । ଗାଁ-ଗାଁରେ ଚରଖା ସଂଘର ଶାଖା ମଧ୍ୟ ଖୋଲିଗଲା । ଏହି ସବୁ ସ୍ଥାନରେ ଶିକ୍ଷିତ ନବଯୁବକମାନେ ଶୃଙ୍ଖଳାର ସହିତ ସାଧାରଣ ଜୀବନ ଯାପନ କରୁଥିଲେ ଓ ସତ୍ୟାଗ୍ରହର ବାଣୀ ପ୍ରଚାର କରୁଥିଲେ । ଗାଁର ଦରିଦ୍ର ସ୍ତ୍ରୀମାନଙ୍କୁ ସୂତା କାଟିବା ପାଇଁ ଚରଖା ଦିଆଗଲା, ଯେଉଁଥିରେ ଘରେ ବସି ସେମାନେ କିଛି ଅର୍ଥ ଉପାର୍ଜ୍ଜନ କରିବାରେ ଲାଗିଗଲେ ।

ପରେ 1930 ଓ 1932 ମସିହାରେ ଯେତେବେଳେ ମହାନ୍ ସତ୍ୟାଗ୍ରହ ଆନ୍ଦୋଳନ ଚାଲିଲା ସେତେବେଳେ ଏହି ଆଶ୍ରମଗୁଡ଼ିକର କର୍ମକର୍ତ୍ତାମାନଙ୍କଠାରୁ ବହୁତ ସାହାଯ୍ୟ ମିଳିଥିଲା । ଗୁପ୍ତଭାବରେ ପ୍ରଚାରପତ୍ର ଛପାଯାଇ ଏହି ଲୋକଙ୍କ ସାହାଯ୍ୟରେ ଗାଁଗଣ୍ଡାରେ ପହଞ୍ଚାଇ ଦିଆଯାଉଥିଲା ।

ଏହି ସାତବର୍ଷ ମଧ୍ୟରେ ଛୋଟ ଛୋଟ ଆନ୍ଦୋଳନରେ ସ୍ଥାନେ ସ୍ଥାନେ ଲୋକେ ସତ୍ୟାଗ୍ରହର ପ୍ରୟୋଗ ମଧ୍ୟ କରୁଥିଲେ । ଏଥିରେ ତାଙ୍କୁ କେଉଁଠାରେ କମ୍ ସଫଳତା ମିଳିଲା ତ ଆଉ କେଉଁଠାରେ ବହୁତ ।

1928 ମସିହାରେ ଗୋଟାଏ ବଡ଼ ଘଟଣା ଘଟିଗଲା । ବ୍ରିଟିଶ୍ ସରକାର ଦେଖିଲେ କି ଦିଲ୍ଲୀର ବିଧାନସଭା ଓ ପ୍ରାଦେଶିକ କାଉନ୍‌ସିଲରେ ଜନତାର ପ୍ରତିନିଧିମାନଙ୍କୁ ଆଉ କିଛି ଅଧିକାର ନଦେଲେ କାମ ଚାଲିବ ନାହିଁ । ନରମପନ୍ଥୀ ନେତା ମଧ୍ୟ ବେଶି ଅଧିକାର ପାଇଁ ଦାବି କରିବା ଆରମ୍ଭ କରିଦେଲେ । ଜନତାର ଯେକୌଣସି ଦାବିକୁ ଫାଙ୍କି ଦେବାଲାଗି ବ୍ରିଟିଶ ଶାସକଙ୍କର ଏକ ଜଣାଶୁଣା କୌଶଳ ଥିଲା । ଯେକୌଣସି ଦାବି ହେଲେ ସରକାର କହୁଥିଲେ ଯେ ଏହା ସମଗ୍ର ଜନତାର ଦାବି ନୁହେଁ; ତେଣୁ ଗ୍ରହଣୀୟ ନୁହେଁ । ଏହି ଅବସ୍ଥାକୁ ଏଡ଼େଇବା ପାଇଁ ନରମପନ୍ଥୀମାନେ କଂଗ୍ରେସର ନେତାମାନଙ୍କ ସହିତ ମିଶି ଏକ ଯୋଜନା ତିଆରି କଲେ । ମୋତିଲାଲ୍ ନେହେରୁଙ୍କ ଅଧ୍ୟକ୍ଷତାରେ ଏକ ସମିତି ଏହି କାର୍ଯ୍ୟ ପାଇଁ ବସିଲା ଓ ସେ ଏହି ପ୍ରକାରର ଏକ ଯୋଜନା ତିଆରି କଲେ । କେତେଜଣ ମୁସଲମାନ ନେତା ଏବଂ ମୁସ୍ଲିମ୍ ଅନ୍ୟ କେତେଜଣଙ୍କ ବ୍ୟତୀତ ସମସ୍ତେ ଏହାକୁ ସ୍ୱୀକାର କରିନେଲେ ।

କିନ୍ତୁ ବ୍ରିଟିଶ ସରକାର ଏହା ଆଗରୁ ସାର୍ ଜନ୍ ସାଇମନ୍‌ଙ୍କ ଅଧ୍ୟକ୍ଷତାରେ ଏକ କମିଶନ୍ ଏଠାକୁ ପଠାଇଦେଲେ । ଏହା ସାଇମନ୍ କମିଶନ୍ ନାମରେ ଜଣାଶୁଣା । ସାଇମନ୍ କମିଶନ୍‌ର ବିରୋଧ କରିବା ପାଇଁ ସାରା ଦେଶରେ ବ୍ୟାପକ ହରତାଳ କରାଗଲା । ଯେଉଁ ଯେଉଁ ସ୍ଥାନକୁ କମିଶନ୍ ଗଲେ ତାଙ୍କୁ କଳା ପତାକା ପ୍ରଦର୍ଶନ କରାଗଲା । ତାଙ୍କ ସହିତ କଥାବାର୍ତ୍ତା କରିବାପାଇଁ କୌଣସି ଲୋକପ୍ରତିନିଧି ପ୍ରସ୍ତୁତ ହେଲେ ନାହିଁ । ଏହି କାର୍ଯ୍ୟରେ ଭାରତର ଯୁବକଗଣ ଓ ବିଦ୍ୟାର୍ଥୀମାନେ ସବୁଠାରୁ ବେଶି ଉତ୍ସାହୀ ହେଲେ । ସରକାର ବିରକ୍ତ ହୋଇ ବିକ୍ଷୋଭ ପ୍ରଦର୍ଶନ କରୁଥିବା ଜନତା ଉପରେ ଲାଠି ପ୍ରହାର କଲେ । କେଉଁ କେଉଁଠାରେ ଗୁଳି ମଧ୍ୟ ଚଳାଯାଇଥିଲା । ଲକ୍ଷ୍ନୌରେ ଜବାହରଲାଲ ନେହେରୁ ଓ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କ ଭଳି ନେତାମାନେ ମଧ୍ୟ ଆଘାତ ପାଇଥିଲେ । ଲାହୋରଠାରେ ପଞ୍ଜାବ-କେଶରୀ ଲାଲା ଲଜପତ୍‌ରାୟଙ୍କ ଉପରେ ଏପରି ପ୍ରହାର ହୋଇଥିଲା ଯେ କିଛି ଦିନ ପରେ ତାଙ୍କର ମୃତ୍ୟୁ ହୋଇଯାଇଥିଲା । ଏହାର ପ୍ରତିଶୋଧ ନେବା ଲାଗି ପ୍ରଖ୍ୟାତ ବିପ୍ଳବୀ ଭଗତ୍‌ସିଂହ ଲାଲା ଲଜପତ୍‌ରାୟଙ୍କ ଉପରେ ଲାଠି ଚଳାଇଥିବା ଗୋରା ପୋଲିସ୍ ଅଫିସର ସାଣ୍ଡର୍ସଙ୍କୁ ଗୁଳିଦ୍ୱାରା ନିହତ କଲେ ଓ ନିଜେ ଫେରାର ହୋଇଗଲେ ।

1925 ମସିହା ପରେ ଅଳ୍ପ କେତେ ବର୍ଷ ପର୍ଯ୍ୟନ୍ତ ବିପ୍ଳବବାଦୀ-ମାନଙ୍କର କାର୍ଯ୍ୟକଳାପ ଅପେକ୍ଷାକୃତ ମାନ୍ଦା ପଡ଼ିଗଲା । କିନ୍ତୁ ଭିତରେ ଭିତରେ ଖୁବ୍ ପ୍ରସ୍ତୁତ ଚାଲିଥିଲା । ଉତ୍ତର-ଭାରତରେ ଏହି ଦଳର ନେତୃତ୍ୱ ଚନ୍ଦ୍ରଶେଖର ଆଜାଦଙ୍କ ହାତରେ



[ଭଗତ୍ ସିଂ]

ଥିଲା । ଏ ହେଉଛନ୍ତି ସେହି ବାଳକ, ଯାହାଙ୍କୁ 1921 ମସିହା ଅସହଯୋଗ ଆନ୍ଦୋଳନରେ ପୋଲିସର ବେତ ପ୍ରହାର "ଆଜାଦ୍" କରିଦେଇଥିଲା । କାକୋରି ଡକାୟତିରେ ମଧ୍ୟ ସେ ଲିପ୍ତଥିଲେ । କିନ୍ତୁ ସେତେବେଳେ ସେ ଧରାପଡ଼ି ନ ଥିଲେ । ଏବେ ସେ ଦେଶବ୍ୟାପୀ ବିପ୍ଳବ ପାଇଁ ଏକ ବ୍ୟାପକ ପ୍ରସ୍ତୁତିରେ ଲାଗିପଡ଼ିଥିଲେ । ଏହି ଷଡ଼ଯନ୍ତ୍ରରେ ବାହାଦୁର ଭଗତ୍‌ସିଂହ ମଧ୍ୟ ଲିପ୍ତଥିଲେ । ସାଣ୍ଡର୍ସଙ୍କୁ ଗୁଳି କରିବା ପରେ ଯେତେବେଳେ ପଞ୍ଜାବରେ ନିରପରାଧ ଜନତାଙ୍କ ଉପରେ ଅନ୍ଧାଧୁନ୍ଦା ଜୁଲମ ହେଲା ସେତେବେଳେ ଜନତାଙ୍କ ମଧ୍ୟରେ ଉତ୍ସାହ ଜନ୍ମାଇବା ପାଇଁ ଏହି ସଙ୍ଗଠନ ଏପରି ଏକ ବାହାଦୁରୀ କାର୍ଯ୍ୟ କରି ଦେଖାଇବାକୁ ଚାହୁଁ ଥିଲେ, ଯାହାଦ୍ୱାରା ଜନସାଧାରଣଙ୍କ ହୃଦୟରେ ବିପ୍ଳବକାରୀମାନଙ୍କ ପ୍ରତି ଶ୍ରଦ୍ଧା ବୃଦ୍ଧି ପାଇବ । ଆତ୍ମଦାନ ଲାଗି ଦୁଇଜଣ ବାହାଦୁର ନବ ଯୁବକ ବାହାରିଗଲେ—ଭଗତସିଂହ ଓ ବଟୁକେଶ୍ୱର ଦତ୍ତ । 8 ଅପ୍ରେଲ 1929 ମସିହାରେ ନୂଆଦିଲ୍ଲୀର ବିଧାନସଭାରେ ଦର୍ଶକମାନଙ୍କର ପାସ୍ ନେଇ ସେ ଦୁଇଜଣ ଉପରେ ଯାଇ ବସିଲେ । ଦୁଇଜଣଯାକ ଗୋଟିକ ପରେ ଗୋଟିଏ ବୋମା ସଦସ୍ୟ ଗ୍ୟାଲେରୀକୁ ଏପରି ଭାବରେ ପକାଇଲେ ଯାହାଦ୍ୱାରା କାହାରି ବି ମୃତ୍ୟୁ ହେଲାନି; କିନ୍ତୁ ଭୟଙ୍କର ଆତଙ୍କ ଖେଳିଗଲା । ପୁଣି ସେମାନେ ନିଜର ରିଭଲଭରରୁ ଶୂନ୍ୟକୁ ଗୁଳି ଚଳାଇଲେ ଓ ବିପ୍ଳବର ପ୍ରଚାରପତ୍ର ତଳକୁ ଫୋପାଡ଼ିଲେ । ଏହା ପରେ ସେହି ଦୁଇଜଣ ବାହାଦୁର ପୋଲିସ ନିକଟରେ ଆତ୍ମସମର୍ପଣ କରିଦେଲେ । ସାରା ଦେଶରେ ଏହି ସମାଚାର ଖୁବ୍ ଉତ୍ତେଜନା ସୃଷ୍ଟି କଲା । ବିପ୍ଳବୀମାନଙ୍କ ପାଇଁ ଦେଶବାସୀଙ୍କ ହୃଦୟରେ ଏକ ନୂତନ ଶ୍ରଦ୍ଧା ଭରିଗଲା ।



[ବଟୁକେଶ୍ୱର ଦତ୍ତ]

କିଛି ଦିନ ପରେ ଲାହୋର ଓ ସାହାରନ୍‌ପୁରରେ ପୋଲିସ ବୋମା ତିଆରି ହେଉଥିବା ବଡ଼ ବଡ଼ କାରଖାନାମାନଙ୍କର ସନ୍ଧାନ କଲା । କେତେକ ଲୋକଙ୍କୁ ଗିରଫ କରାଗଲା । ସେମାନଙ୍କ ମଧ୍ୟରୁ କେତେଜଣ ସେହି ଗୁପ୍ତ ବିପ୍ଳବୀ ସଙ୍ଗଠନ ବିଷୟରେ ସମସ୍ତ ସମ୍ବାଦ ପୋଲିସକୁ ଜଣାଇଦେଲେ । ପୁଣି ତନାଘନା ଧରପଗଡ଼ ଆରମ୍ଭ ହୋଇଗଲା । ଲାହୋର ଷଡ଼ଯନ୍ତ୍ର କେଶ୍ ନାମରେ ତାଙ୍କ ଉପରେ ମକଦ୍ଦମା ଚାଲିଲା ।

ଅବଶେଷରେ ବିରକ୍ତ ହୋଇ ବନ୍ଦୀ ହୋଇ ରହିଥିବା ବିପ୍ଳବୀମାନେ ଅନଶନ ଆରମ୍ଭ କରିଦେଲେ, ଯାହାକି ପ୍ରାୟ ଦୁଇମାସ ପର୍ଯ୍ୟନ୍ତ ଚାଲିଲା । ସାରା ଦେଶର ଦୃଷ୍ଟି ସେମାନଙ୍କ ଉପରେ କେନ୍ଦ୍ରୀଭୂତ ହେଲା ଓ ସରକାରଙ୍କୁ ନଇଁବାକୁ ପଡ଼ିଲା । ସରକାର କଏଦୀମାନଙ୍କର ବହୁତ ଗୁଡ଼ିଏ ସର୍ତ୍ତକୁ ମାନିନେଲେ, କିନ୍ତୁ ଯତିନ୍ ଦାସ ନାମକ ଜଣେ କଏଦୀ ତଥାପି ନିଜର ଅନଶନ ଭଙ୍ଗ କଲେନାହିଁ । 64 ଦିନ ଅନଶନ ପରେ ଜେଲରେ ତାଙ୍କର ମୃତ୍ୟୁ ହୋଇଗଲା । ଏହା ଦେଶର ନାଗରିକଙ୍କୁ ବଡ଼ ଉତ୍ତପ୍ତ କରିଦେଇଥିଲା ।

ଏକ ପକ୍ଷେ ଦେଶରେ ଷଡ଼ଯନ୍ତ୍ରକାରୀମାନଙ୍କର ଗୁପ୍ତ କାର୍ଯ୍ୟକଳାପ ବ୍ୟାପକ ଆକାରରେ ଲାଗିରହିଥିଲା ଓ ଅପର ପକ୍ଷେ କଂଗ୍ରେସ ସଙ୍ଗଠନ ସହିତ ସଂଯୁକ୍ତ ଥିବା ବା ନଥିବା ଯୁବକମାନେ ଗଣ-ବିପ୍ଳବ ପ୍ରତି ଅନୁରକ୍ତ ଥିଲେ । ଜବାହରଲାଲ ନେହେରୁ ଓ ସୁଭାଷଚନ୍ଦ୍ର ବୋଷ ଇତିମଧ୍ୟରେ ୟୁରୋପରେ ବହୁତ ସମୟ ବିତାଇ ଭାରତକୁ ଫେରି ଆସିଥିଲେ । ରୁଷିଆର ଜନତା ଗଣ-ବିପ୍ଳବ ଦ୍ୱାରା ଜାର୍ ଶାସନର ଅବସାନ ଘଟାଇଥିଲେ ଓ କୃଷୀ ତଥା ଶ୍ରମିକମାନଙ୍କ ଶାସନ ସ୍ଥାପନ କରିଥିଲେ । ଦରିଦ୍ର ଓ ଧନୀଙ୍କ ମଧ୍ୟରେ ସାରା ଭେଦଭାବ ଲୋପ କରିବା ପାଇଁ ସେମାନେ ଯେଉଁ ପଦକ୍ଷେପ ନେଲେ ତାହା ପୃଥିବୀ ଇତିହାସରେ ବିରଳ ଥିଲା । ଜବାହରଲାଲ ଓ ସୁଭାଷ ସେହି ବିପ୍ଳବ ଦ୍ୱାରା ବହୁତ ପ୍ରଭାବିତ ହୋଇ ଆସିଥିଲେ । ଦେଶର ଯୁବକବର୍ଗ ଏହି ନେତାମାନଙ୍କ ପ୍ରତି ଆହୁରି ଆକୃଷ୍ଟ ହେବାକୁ ଲାଗିଲେ ଓ କିଛି କରି ଦେଖାଇବା ଲାଗି ବ୍ୟତିବ୍ୟସ୍ତ ହୋଇଉଠିଲେ ।

1928 ମସିହାରେ କଲିକତାରେ ଯେଉଁ କଂଗ୍ରେସ ଅଧିବେଶନ ହୋଇଥିଲା ସେଥିରେ ସବୁ ଦଳର ଲୋକଙ୍କ ଦ୍ୱାରା ଆଗତ କରାଯାଇଥିବା ମିଳିତ ପ୍ରସ୍ତାବକୁ ପେଶ୍ କରାଗଲା । ମୋତିଲାଲ୍ ନେହେରୁ ସେହି ଅଧିବେଶନର ଅଧ୍ୟକ୍ଷ ଥିଲେ । ଏହି ପ୍ରସ୍ତାବର ପ୍ରଣୟନ ମଧ୍ୟ ତାଙ୍କରି ଅଧ୍ୟକ୍ଷତାରେ କରାଯାଇଥିଲା, କିନ୍ତୁ ତାଙ୍କର ପୁଅ ଜବାହରଲାଲ ନେହେରୁ ଓ ଯୁବନେତା ସୁଭାଷଚନ୍ଦ୍ର ବୋଷ ତାହାକୁ ସମର୍ଥନ କରିବାକୁ ଅସ୍ୱୀକାର କରିଦେଲେ । ସେହି ପ୍ରସ୍ତାବରେ ବ୍ୟବସ୍ଥା ଥିଲା ଯେ ଭାରତର ଗଣପ୍ରତିନିଧିମାନେ ବ୍ରିଟିଶ ସରକାରଙ୍କ ଅଧୀନରେ ରହି ଶାସନ ଚଳାଇବାକୁ; କିନ୍ତୁ ସୁଭାଷ ଓ ଜବାହରଲାଲ ପୂର୍ଣ୍ଣ ସ୍ୱରାଜ୍ୟଲାଭର ଦାବି କରୁଥିଲେ । ଶେଷରେ ଗାନ୍ଧୀଜୀ ସେମାନଙ୍କୁ ବୁଝାଇ ମନାଇନେଲେ । ନିଷ୍ପତ୍ତି

ହେଲା ଯେ ଯଦି ସରକାର ଏକ ବର୍ଷ ଭିତରେ ସେହି ପ୍ରସ୍ତାବ ଗ୍ରହଣ କରି କାର୍ଯ୍ୟକାରୀ ନ କରନ୍ତି ତେବେ ପୂର୍ଣ୍ଣ ସ୍ୱରାଜ୍ୟ ପାଇବା ପାଇଁ କଂଗ୍ରେସ ନିଜର ସବୁ ଶକ୍ତି ବିନିଯୋଗ କରିବ ।

ପରବର୍ଷ ଡିସେମ୍ବର 1929 ମସିହାରେ କଂଗ୍ରେସର ଅଧିବେଶନ ଲାହୋରରେ ହେଲା ଓ ଯୁବଗୋଷ୍ଠୀର ନେତା ଜବାହରଲାଲ ନେହେରୁ ତାହାର ଅଧ୍ୟକ୍ଷ ହେଲେ । ବିପୁଳ କରତାଳିର ଧ୍ୱନିରେ କଂଗ୍ରେସ ନିଷ୍ପତ୍ତି ନେଲା ଯେ ପୂର୍ଣ୍ଣ ସ୍ୱରାଜ୍ୟ ନ ମିଳିବା ପର୍ଯ୍ୟନ୍ତ କଂଗ୍ରେସର ବିଶ୍ରାମ ନାହିଁ ।

## ପୂର୍ଣ୍ଣ ସ୍ୱରାଜ୍ୟର ପ୍ରତିଜ୍ଞା ଓ ଲବଣ ସତ୍ୟାଗ୍ରହ

1930 ମସିହା । ଜାନୁଆରୀ 26 ତାରିଖକୁ ସ୍ୱାଧୀନତା ଦିବସ ରୂପେ ଠିକ୍ କରାଗଲା । ସେହିଦିନ ଦେଶର ପ୍ରତ୍ୟେକ ଶ୍ରେଷ୍ଠ ବଡ଼ ସହରରେ ସଭା କରି ଦେଶବାସୀ ଭାରତକୁ ପୂର୍ଣ୍ଣ ସ୍ୱରାଜ୍ୟ ଦେବାପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିଲେ (ଏହି କାରଣରୁ ଆମର ଲୋକତାନ୍ତ୍ରିକ ଗଣରାଜ୍ୟର ଘୋଷଣା ମଧ୍ୟ ଜାନୁଆରୀ 26 ତାରିଖରେ ହୋଇଥିଲା) । କଂଗ୍ରେସ ପକ୍ଷରୁ ସତ୍ୟାଗ୍ରହ ସଂଗ୍ରାମର ସମସ୍ତ ଭାର ଗାନ୍ଧୀଜୀଙ୍କୁ ଅର୍ପଣ କରିଦିଆଯାଇଥିଲା ।

ଗାନ୍ଧୀଜୀ ପ୍ରଥମେ ଲବଣ ଆଇନ ଭଙ୍ଗ କରିବାକୁ ନିଷ୍ପତ୍ତି ନେଲେ । ଲବଣ ଆଇନ ଭଙ୍ଗ କଲେ ଲାଭ କଣ ହେବ, ସେ ବିଷୟରେ ଅନେକଙ୍କ ମନରେ ସନ୍ଦେହ ହେଲା । ଗୋଟାଏ କିଛି ଅଦ୍ଭୁତ ନାଟକୀୟ ଘଟଣା ଘଟିବ ବୋଲି ଯେଉଁମାନେ ଆଶା କରୁଥିଲେ ସେମାନେ ନିରାଶ ହେଲେ । କିନ୍ତୁ ଯେତେବେଳେ ଲବଣ ଆନ୍ଦୋଳନକୁ କେନ୍ଦ୍ର କରି ସଂଗ୍ରାମ ଆରମ୍ଭ ହେଲା ସେତେବେଳେ ସାରା ଦେଶ ସ୍ତମ୍ଭୀଭୂତ ହୋଇଗଲା ।

ଗାନ୍ଧୀଜୀ ବୁଝିଥିଲେ କି ସର୍ବପ୍ରଥମେ ଯେ ଏକ ବହୁତ ଶ୍ରେଷ୍ଠ ସମସ୍ୟା ନେବେ ତାହା ଦରିଦ୍ରମାନଙ୍କର ସମସ୍ୟା ହୋଇଥିବ । ଦେଶରେ ଦାରିଦ୍ର୍ୟ ଏତେ ବେଶି ଥିଲା ଯେ ଖଦଡ଼ା ଅଟାର ଶୁଖିଲା ରୁଟି କିମ୍ବା ମୋଟା ଚାଉଳର ଭାତ ସହିତ ଲକ୍ଷ ଲକ୍ଷ ଲୋକ ଲୁଣ ଟିକେ ମଧ୍ୟ ଖାଇବାକୁ ପାଉନଥିଲେ । ଭାରତର ତିନିପାଖେ ସମୁଦ୍ର ଘେରା । ଆକାଶରେ ଚନ୍ଦ୍ରର ବୃଦ୍ଧି ଅନୁସାରେ ସମୁଦ୍ରର ଢେଉ ମଧ୍ୟ ବୃଦ୍ଧି ପାଏ ଏବଂ ପୂର୍ଣ୍ଣିମା ଦିନ ପାଣିର ଜୁଆର ସବୁଠାରୁ ବେଶି ଉପରକୁ ଉଠିଥାଏ । ସେତେବେଳେ ଏହି ପାଣି ସମୁଦ୍ର କୂଳରୁ ବହୁତ ଦୂର ପର୍ଯ୍ୟନ୍ତ ବ୍ୟାପିଯାଏ ଓ ସମୁଦ୍ର ତଟରେ ଥିବା ଖାଲ ଜାଗାମାନଙ୍କରେ ପାଣି ଭର୍ତ୍ତି ହୋଇଯାଏ । କୃଷ୍ଣ ପକ୍ଷରେ ଜୁଆର କମିଲେ ଖାଲ ଜାଗାମାନଙ୍କରେ ରହିଥିବା ପାଣି ଶୁଖିବାକୁ ଲାଗେ । ଅଳ୍ପ ଦିନରେ ତାହା ପରିଷ୍କାର ଶୁଭ୍ର ଲବଣରେ ପରିଣତ ହୋଇଯାଏ । ସମୁଦ୍ର କୂଳେ କୂଳେ ଯେଉଁ ଗାଁଗଣ୍ଡା ଥାଏ ସେଠାକାର ଲୋକଙ୍କ ସାମନାରେ ଲୁଣ ସରି ସରି ହୋଇ ପଡ଼ିରହିଥାଏ—ଯେପରି ନଦୀର ପାଣି । ନଦୀରୁ କିମ୍ବା କୂଅରୁ ପାଣି ନେବା ପାଇଁ କାହାକୁ



କୌଣସି ପ୍ରକାରେ ମନା ନ ଥିଲା, କିନ୍ତୁ ସାମନାରେ ପଡ଼ିଥିବା ଲୁଣକୁ ଉଠାଇବା ଆଇନବିରୁଦ୍ଧ କରି ଦିଆଯାଇଥିଲା ।

ସମୁଦ୍ର କୂଳେ କୂଳେ ଅଳ୍ପ କେତୋଟି ସରକାରୀ ଲୁଣ ଗୋଦାମ ଥିଲା । ସେହି ଗୋଦାମ ଜରିଆରେ କିଛି ଲୁଣ ବଜାରକୁ ଅଣାଯାଉଥିଲା । କିନ୍ତୁ ବେଶି ଭାଗ ଲୁଣ ଆମର ଏଠାକୁ ବିଲାତରୁ ହିଁ ଆସୁଥିଲା । ଏହାର କାରଣ ଥିଲା କି ଇଂରେଜମାନଙ୍କର ଜାହାଜ ଏଠାରୁ ଖାଦ୍ୟଶସ୍ୟ ଓ କଧା ଦ୍ରବ୍ୟ ବହୁତ କଞ୍ଚାମାଲ ନେଇ ଯାଉଥିଲା । ସେଗୁଡ଼ିକ ଯେତେବେଳେ ସେଠାରୁ ଫେରୁଥିଲା, ପ୍ରାୟ ଖାଲି ଫେରୁଥିଲା । ସମୁଦ୍ରରେ ଆସିବା ଲାଗି କୌଣସି ଭାରି ଜିନିଷ ସେହି ଜାହାଜରେ ଭର୍ତ୍ତି କରି ଆଣିବା ଆବଶ୍ୟକ ପଡ଼ୁଥିଲା । ଏଥି ଯୋଗୁ ବିଲାତରେ ଜାହାଜଗୁଡ଼ିକୁ ଲୁଣରେ ଭର୍ତ୍ତି କରି ଦିଆଯାଉଥିଲା ଓ ସେହି ଲୁଣକୁ ଭାରତରେ ବିକ୍ରି କରାଯାଉଥିଲା ।

ଗାନ୍ଧୀଜୀ ନିଷ୍ପତ୍ତି କଲେ ଯେ ସତ୍ୟାଗ୍ରହୀମାନଙ୍କୁ ନେଇ ସେ ସମୁଦ୍ରକୂଳ ପର୍ଯ୍ୟନ୍ତ ପଦଯାତ୍ରା କରିବେ ଓ ସେଠାରେ ଏହି ଲବଣ ଆଇନକୁ ଭଙ୍ଗ କରିବେ । ଏଥିଲାଗି ସେମାନେ ଗୁଜୁରାଟର ସୁରଟ ଜିଲ୍ଲାରେ ଦାଣ୍ଡି ନାମକ ସ୍ଥାନ ବାଛିଲେ । ସେ ପର୍ଯ୍ୟନ୍ତ ପହଞ୍ଚିବାକୁ ପ୍ରାୟ ଦୁଇଶହ ମାଇଲ ପଦଯାତ୍ରା କରିବାକୁ ପଡ଼ିଥିଲା । ପ୍ରତିଦିନ 8 ମାଇଲ ହିସାବରେ 25 ଦିନରେ ଏହି ଯାତ୍ରା ଶେଷ କରିବାକୁ ଥିଲା ।

ଗାନ୍ଧୀଜୀ 79 ଜଣ ସତ୍ୟାଗ୍ରହୀଙ୍କୁ ନେଇ 1930 ମସିହା ମାର୍ଚ୍ଚ ମାସ 12 ତାରିଖରେ ଐତିହାସିକ ଦାଣ୍ଡି ଯାତ୍ରା ସାବରମତୀ ଆଶ୍ରମରୁ ଆରମ୍ଭ କଲେ । ଆଶ୍ରମ ସମ୍ମୁଖରେ ପୂର୍ବ ରାତିରୁ ହିଁ ହଜାର ହଜାର ସ୍ତ୍ରୀ ପୁରୁଷଙ୍କର ସମାଗମ ହୋଇଥିଲା । ସକାଳେ ଯାତ୍ରା ଆରମ୍ଭ ହେଲା ବେଳକୁ ସାବରମତୀ ଆଶ୍ରମଠାରୁ ଅହମଦାବାଦ ସହର ପର୍ଯ୍ୟନ୍ତ ରାସ୍ତାର ଦୁଇ ପାଖ ଲୋକାରଣ୍ୟ ହୋଇଯାଇଥିଲା ।

ରାସ୍ତାରେ ଯେଉଁ ଗାଁ ପଡ଼ୁଥିଲା ସେଠାକାର ଲୋକମାନେ ଗାନ୍ଧୀଜୀଙ୍କୁ ବିପୁଳ ସମ୍ବର୍ଦ୍ଧନା



[ସାବରମତୀ ଆଶ୍ରମ]

ଜଣାଉଥିଲେ । ସ୍ତ୍ରୀଲୋକମାନେ ତାଙ୍କର ଆଳତି କରୁଥିଲେ, ତାଙ୍କ କପାଳରେ ସିନ୍ଦୂର ଲଗାଇ ଦେଉଥିଲେ ଓ ପୁଷ୍ପମାଳ ପିନ୍ଧାଉଥିଲେ । ଯେଉଁ ଗ୍ରାମରେ ସତ୍ୟାଗ୍ରହୀମାନେ ରାତି ଯାପନ କରୁଥିଲେ ସେଠାକାର ଲୋକଙ୍କ ସହିତ ଗାନ୍ଧୀଜୀ କଥାବାର୍ତ୍ତା କରୁଥିଲେ ଓ ଗ୍ରାମବାସୀଙ୍କ ସଭାରେ ଭାଷଣ ଦେଉଥିଲେ । ପଚଶ ଦିନର ସେହି ଦାଣ୍ଡି ଯାତ୍ରା ସାରା ଦେଶରେ ଅଭୂତପୂର୍ବ ଜାଗରଣ ଜନ୍ମାଇଥିଲା ।

ଅପ୍ରେଲ 5 ତାରିଖରେ ସତ୍ୟାଗ୍ରହୀମାନେ ଦାଣ୍ଡି ଠାରେ ପହଞ୍ଚିଲେ । ଅପ୍ରେଲ୍ 6 ତାରିଖରେ ସତ୍ୟାଗ୍ରହ । ସେହି ଦିନ ସକାଳେ ଗାନ୍ଧୀଜୀ ଅନ୍ୟମାନଙ୍କ ସହିତ ସମୁଦ୍ରରେ ସ୍ନାନ କଲେ ।



ତା'ପରେ ଲୁଣିଆ ପାଣିକୁ ଗୋଟିଏ ପାତ୍ରରେ ରଖି ଗରମ କରି ସେଥିରୁ ପ୍ରାୟ 5 ଗ୍ରାମ ଲୁଣ ମିଳିଗଲା । ଅହମଦାବାଦର ଜଣେ ସାହୁକାର ସେହି ଲୁଣକୁ 525 ଟଙ୍କାରେ କିଣିନେଲେ ।

ଲବଣ ଆଇନ ଭଙ୍ଗ କରି ଗାନ୍ଧୀଜୀ ସାରା ଦେଶକୁ ସତ୍ୟାଗ୍ରହ କରିବାକୁ ସ୍ୱାଧୀନତା ଦେଇଦେଲେ । ହଜାର ହଜାର ସଂଖ୍ୟାରେ ସ୍ତ୍ରୀ ପୁରୁଷ ଲବଣ ଆଇନ ଭଙ୍ଗ କରିବାକୁ ଲାଗିଲେ । ପୋଲିସର ଅତ୍ୟାଚାର ପୁଣି ଆରମ୍ଭ ହୋଇଗଲା ।

ସାରା ଦେଶରେ ଲୋକଙ୍କୁ ବନ୍ଦୀ କରାଗଲା, ସେମାନଙ୍କ ଉପରେ ନାନା ପ୍ରକାର ଜୁଲମ କରାଯାଉଥିଲା । କିନ୍ତୁ ଗାନ୍ଧୀଜୀଙ୍କୁ ଗିରଫ କରିବାର ସାହସ ଏବେ ବି ବ୍ରିଟିଶ ସରକାରଙ୍କର ହେଲା ନାହିଁ । ଗୁଜୁରାଟର ଧରାସଣା ସରକାରୀ ଲୁଣ ଗୋଦାମ ଉପରେ ଚଢ଼ାଉ କରି ସବୁ ଲୁଣ ନେଇଯିବା ଲାଗି ଗାନ୍ଧୀଜୀ ଆଉ ଏକ ନିଷ୍ପତ୍ତି ନେଲେ । ଏବେ ସରକାର ଖୁବ୍ ଅଡୁଆରେ ପଡ଼ିଲେ ଓ ଗୋଦାମ ଚଢ଼ାଉ ପୂର୍ବରୁ ଗାନ୍ଧିଜୀଙ୍କୁ ଗିରଫ କରିନେଲେ ।

ଗାନ୍ଧୀଜୀଙ୍କ ପରେ ବୃଦ୍ଧ ଅବ୍ବାସ ତୈୟବ୍‌ଜୀ ସତ୍ୟାଗ୍ରହୀଙ୍କ ନେତୃତ୍ୱ ନେଲେ ଓ ତାଙ୍କର ଗିରଫଦାରି ପରେ ସରୋଜିନୀ ନାଇଡୁ ।

ସରୋଜିନୀ ନାଇଡୁ ଇଂରେଜୀରେ ପ୍ରସିଦ୍ଧ କବି ଥିଲେ ଓ ଜଣେ ମହାନ୍ ଦେଶପ୍ରେମୀ ଥିଲେ ।

ଦେଶସାରା ସମ୍ବାଦପତ୍ରମାନଙ୍କରେ ସମ୍ବାଦ ଛପାଗଲା ଯେ ସଶସ୍ତ୍ର ପୋଲିସ ଧରାସଣା ସରକାରୀ ଗୋଦାମ ସମ୍ମୁଖରେ ସରୋଜିନୀ ନାଇଡୁ ଓ ତାଙ୍କର ଦଳକୁ ଅଟକାଇ ଦେଇଛନ୍ତି । ମେ ମାସର ଉତ୍ତପ୍ତ ବାଲୁକାରେ ସାରା ଦିନ ଭୋକ-ଉପାସରେ ସତ୍ୟାଗ୍ରହୀ-ମାନେ ସେହି ଖରାରେ ବସିରହିଲେ ।

ଅବଶେଷରେ ସେ ମଧ୍ୟ ଗିରଫ ହେଲେ । ସତ୍ୟାଗ୍ରହୀମାନେ ଏକ ସପ୍ତାହ ପର୍ଯ୍ୟନ୍ତ ସେହି ଗୋଦାମ ସମ୍ମୁଖରେ ଧାରଣା ଦେଇ ବସିରହିଲେ । ପୋଲିସ ଘୋଡ଼ା ଚଢ଼ି ସତ୍ୟାଗ୍ରହୀମାନଙ୍କ ଉପରେ ଘୋଡ଼ା ଦଉଡ଼ାଇ ଦେଉଥିଲେ, ଲାଠିରେ ପ୍ରହାର କରୁଥିଲେ, ସତ୍ୟାଗ୍ରହୀମାନଙ୍କର ମୁଣ୍ଡ ଫାଟିଯାଉଥିଲା ଏବଂ ରକ୍ତାକ୍ତ ଅବସ୍ଥାରେ ସେମାନଙ୍କୁ ଜେଲରେ ବନ୍ଦୀ କରି ଦିଆଯାଉଥିଲା ।

## ଗାନ୍ଧୀ-ଇର୍‌ୱିନ୍ ଚୁକ୍ତିନାମା

କିନ୍ତୁ ସତ୍ୟାଗ୍ରହୀଙ୍କର ସଂଖ୍ୟା କିଛି କମ୍ ହେଲା ନାହିଁ । ଲବଣ ଆଇନ ଭାଙ୍ଗିବା ବ୍ୟତୀତ ବିଲାତି ବସ୍ତ୍ର ଓ ମଦ ଦୋକାନ ସାମନାରେ ଧାରଣା ଦେବା ମଧ୍ୟ ଆରମ୍ଭ ହୋଇଗଲା । ଯୁବକଙ୍କ ମଧ୍ୟରେ ଅପାର ଉତ୍ସାହ ଦେଖା ଦେଇଥିଲା । ହଜାର ହଜାର ଲୋକ ଜେଲରେ ବନ୍ଦୀ ହୋଇଗଲେ । ହଜାର ହଜାରଙ୍କର ସମ୍ପତ୍ତି ଜବତ କରିନିଆଗଲା । ଅନେକ ଆଘାତପ୍ରାପ୍ତ ହେଲେ, ଶହ ସହସ୍ରଙ୍କର ଜୀବନ ଗଲା ।

ଏଥରକର ଆନ୍ଦୋଳନରେ ଏକ ବଡ଼ କଥା ଥିଲା ଯେ ସ୍ତ୍ରୀଲୋକମାନେ ମଧ୍ୟ ଏଥିରେ ଭାଗ ନେଇଥିଲେ । ବିଶେଷ କରି ଗୁଜୁରାଟରେ ଦାଣ୍ଡି ଯାତ୍ରା ସମୟରେ ସ୍ତ୍ରୀଲୋକମାନଙ୍କ ମଧ୍ୟରେ ଗାନ୍ଧୀଜୀ ପ୍ରବଳ ଉତ୍ସାହ ଜନ୍ମାଇଥିଲେ । ଜେଲ ଯାଇଥିବା ସ୍ତ୍ରୀଲୋକଙ୍କର ସଂଖ୍ୟା ସେଠାରେ ବହୁତ ବେଶି ଥିଲା । ଉତ୍ତରଭାରତରେ ପ୍ରଧାନତଃ ଉତ୍ତର ପ୍ରଦେଶ ଓ ବିହାରରେ ସେତେବେଳେ ସ୍ତ୍ରୀମାନଙ୍କ ମଧ୍ୟରେ ପର୍ଦ୍ଦା ପ୍ରଚଳନ ଥିଲେ ମଧ୍ୟ ହଜାର ହଜାର ସଂଖ୍ୟାରେ ପାଠୋଇ ଓ ଅପାଠୋଇ ସ୍ତ୍ରୀମାନେ ପର୍ଦ୍ଦା ଛାଡ଼ି ରାଷ୍ଟ୍ରୀୟ ଆନ୍ଦୋଳନରେ ଯୋଗଦାନକଲେ ।

ଗ୍ରୀଷ୍ମ ବିତିଗଲା, ବର୍ଷା ଆସିଗଲା । ପୁଣି ଶୀତ ଆସିଲା । କିନ୍ତୁ ସତ୍ୟାଗ୍ରହ ଆନ୍ଦୋଳନ ଅବିରତ ଚାଲିଥାଏ । ବରଂ ଏବେ ଗୁଜୁରାଟର ବାରଡ଼ୋଲୀ ତାଲୁକ ଓ ଖେଡ଼ା ଜିଲ୍ଲାର ଚାଷୀମାନେ ଖଜଣାବନ୍ଦ ଆନ୍ଦୋଳନ ଆରମ୍ଭ କରିଦେଲେ । ଉତ୍ତର ପ୍ରଦେଶ ଓ ଅନ୍ୟ ଅଞ୍ଚଳରେ ମଧ୍ୟ ଚାଷୀମାନେ ଖଜଣାବନ୍ଦ ଅାନ୍ଦୋଳନ ପାଇଁ ପ୍ରସ୍ତୁତ ହେଲେ ।

ଶେଷରେ ସରକାର ବ୍ୟତିବ୍ୟସ୍ତ ହୋଇଗଲେ । 1931 ମସିହା ଜାନୁୟାରୀ ଶେଷରେ ଭାଇସ୍‌ରୟ ଲର୍ଡ଼ ଇରୱିନ୍ ଏକ ଚୁକ୍ତିନାମା ଆଶାରେ ସମସ୍ତ ବଡ଼ ନେତାମାନଙ୍କୁ ଜେଲରୁ ମୁକ୍ତ କରିଦେଲେ ।



[ଗୋଲଟେବୁଲ ବୈଠକ]

ଲର୍ଡ ଇର୍‌ୱଇନ୍ ଓ ଗାନ୍ଧୀଜୀଙ୍କ ମଧ୍ୟରେ ଏକାଧିକବାର କଥାବାର୍ତ୍ତା ହେଲା । ଶେଷରେ 1931 ମସିହା ମାର୍ଚ୍ଚ ମାସରେ ଗାନ୍ଧୀ-ଇର୍‌ୱଇନ୍ ରାଜିନାମା ସ୍ୱାକ୍ଷରିତ ହେଲା । ଉଭୟ ପକ୍ଷ ନିଜର ଦାବି ନରମକଲେ । ଲଣ୍ଡନରେ ଗୋଲ୍ ଟେବୁଲ୍ ବୈଠକରେ ଯୋଗ ଦେବା ଲାଗି କଂଗ୍ରେସ ରାଜିହେଲା ଓ ସେ ପର୍ଯ୍ୟନ୍ତ ସତ୍ୟାଗ୍ରହ ଆନ୍ଦୋଳନ ସ୍ଥଗିତ ରଖିବା ସ୍ଥିର ହେଲା । ସରକାର ବନ୍ଦୀ ହୋଇଥିବା ସମସ୍ତଙ୍କୁ ମୁକ୍ତ କରିଦେଲେ । ସମୁଦ୍ର କୂଳରେ ପଡ଼ି ରହିଥିବା ଲୁଣ ଯେକେହି ନେଇପାରିବେ ବୋଲି ସରକାର ଘୋଷଣାକଲେ ।

ସେତେବେଳେ ଇଂରେଜମାନଙ୍କ ଭିତରେ ଦୁଇଟି ମତବାଦର ଲୋକ ଥିଲେ । ଦଳେ ଗାନ୍ଧୀଜୀଙ୍କ ସତ୍ୟାଗ୍ରହର ସଫଳତା ଦେଖି ମୁଗ୍ଧ ହୋଇଥିଲେ ଓ ଭାରତକୁ ସ୍ୱାଧୀନତା ଦେବାକୁ ହିଁ ହେବ ବୋଲି କହୁଥିଲେ । ଅନ୍ୟ ମତବାଦୀମାନେ ବିଶ୍ୱାସ କରୁଥିଲେ

ଯେ ଶକ୍ତି ପ୍ରୟୋଗ କରି ଭାରତକୁ ଅନେକ ଦିନ ପର୍ଯ୍ୟନ୍ତ ଶାସନ କରାଯାଇପାରିବ ଭାରତରେ ଥିବା ଇଂରେଜ ଅଫିସରମାନେ 'ପ୍ରାସ୍ତ ଦ୍ଵିଗ୍ରସ୍ତ' ମତବାଦର ଥିଲେ । ସେମାନେ ଗାନ୍ଧୀ-ଇର୍‌ୱିନ୍‌ ଚୁକ୍ତିନାମାକୁ ଅକାମୀ କରିଦେବାକୁ ଚେଷ୍ଟା କଲେ । ବିଭିନ୍ନ ଅଞ୍ଚଳେ ହିଂସାତ୍ମକ ଆନ୍ଦୋଳନ ଲାଗି ଲୋକଙ୍କୁ ଉଦ୍‌ବୁଦ୍ଧ କରାଇଲେ ।

ଇଂଲଣ୍ଡରେ ମଧ୍ୟ ଏହି ଧରଣର ଅଫିସରଙ୍କ ସଂଖ୍ୟା ବହୁତ ଥିଲା । ସେମାନେ ଭାରତର ସ୍ୱାଧୀନତା ବାଟରେ ସବୁ ପ୍ରକାର ପ୍ରତିବନ୍ଧକ ସୃଷ୍ଟି କରୁଥିଲେ । ଯେଉଁ ଭାରତୀୟମାନେ ବ୍ରିଟିଶ ଶାସନ ସପକ୍ଷରେ ଥିଲେ ସେହିମାନଙ୍କ ମଧ୍ୟରୁ ଅନେକଙ୍କୁ ଗୋଲ୍‌ଟେବୁଲ ବୈଠକକୁ ଡକାଯାଇଥିଲା । ସେମାନଙ୍କ ମଧ୍ୟରେ ବିଭିନ୍ନ ଧର୍ମ-ସମ୍ପ୍ରଦାୟ ଓ ତଥାକଥିତ ଅଛୁଆଁ ସମ୍ପ୍ରଦାୟର ପ୍ରତିନିଧି ମଧ୍ୟ ଥିଲେ । କଂଗ୍ରେସ କେବଳ ହିନ୍ଦୁମାନଙ୍କର ଏକ ସଂସ୍ଥା ବୋଲି ଧାରଣା ଦିଆଗଲା । ଏହି ଅବସ୍ଥାରେ ଗାନ୍ଧୀଜୀ ଅନୁଭବ କଲେ ଯେ ଲଣ୍ଡନ ଯାଇ କିଛି ଲାଭ ନାହିଁ ।

ବ୍ରିଟିଶ ସରକାର ଅଡ଼ୁଆରେ ପଡ଼ିଲେ ଓ ଘୋଷଣା କଲେ ଯେ ଗୋଲ୍‌ ଟେବୁଲ୍‌ ବୈଠକରେ ସଂଖ୍ୟାଧିକ ଭୋଟ୍‌ରେ କିଛି ନିଷ୍ପତ୍ତି ନିଆଯିବନାହିଁ । କେବଳ ଭିନ୍ନ ଗୋଷ୍ଠୀର ମତ ଜାଣିବା ଲାଗି ଏହି ବୈଠକ ଡକାଯାଇଛି । ପରିଶେଷରେ କଂଗ୍ରେସ ବୈଠକରେ ଯୋଗ ଦେବ ବୋଲି ଠିକ୍‌ହେଲା ଓ ଗାନ୍ଧୀଜୀ କଂଗ୍ରେସର ଏକମାତ୍ର ପ୍ରତିନିଧି ହେବେ । କିନ୍ତୁ ଗୋଲ୍‌ ଟେବୁଲ୍‌ ବୈଠକ ସମ୍ପୂର୍ଣ୍ଣ ବିଫଳ ହେଲା ।

[ସେଣ୍ଟ୍ରାଲ୍‌ ଜେଲ୍‌, ୟାର୍‌ବାଦ]



ଗୋଲ୍ ଟେବୁଲ୍ ବୈଠକରୁ ଫେରି ବମ୍ବେରେ ପହଞ୍ଚିବାମାତ୍ରେ ଗାନ୍ଧୀଜୀଙ୍କୁ ପୁଣି ଗିରଫ କରାଗଲା । ଅନ୍ୟାନ୍ୟ କଂଗ୍ରେସ ନେତାମାନଙ୍କୁ ମଧ୍ୟ ଗିରଫ କରାଗଲା । ସେତେବେଳକୁ ଲର୍ଡ ଇରୱିନଙ୍କ ସ୍ଥାନରେ ଲର୍ଡ ୱିଲିଂଡନ୍ ନୂଆ ଭାଇସରୟ ହୋଇ ଆସିସାରିଥିଲେ ।

## ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଓ ଦ୍ୱିତୀୟ ମହାଯୁଦ୍ଧ

ପୁନର୍ବାର ଦେଶର ସବୁ ବଡ଼ବଡ଼ ଜାତୀୟ ସଂସ୍ଥାମାନଙ୍କୁ ବେଆଇନ୍ କରିଦିଆଗଲା । କଂଗ୍ରେସ କମିଟିଗୁଡ଼ିକୁ ବେଆଇନ ଘୋଷଣା କରିଦିଆଗଲା । ରାଷ୍ଟ୍ରୀୟ ଖବରକାଗଜ ଗୁଡ଼ିକୁ ଅମାନତ ସ୍ୱରୂପ ବହୁ ଅର୍ଥ ଜମା ରଖିବାକୁ କୁହାଗଲା, ଯାହା ନ ଦେବା ଫଳରେ ସେ ସବୁ ବନ୍ଦ ହୋଇଗଲା । ରାଷ୍ଟ୍ରପ୍ରେମୀମାନଙ୍କର ଛାପାଖାନାଗୁଡ଼ିକରେ କଂଗ୍ରେସର ପ୍ରଚାରପତ୍ର ପୁଣି ଗୁପ୍ତଭାବେ ଛପା ହେବାକୁ ଲାଗିଲା ଓ ଚରଖା ସଂଘ ଏବଂ ଅସ୍ପୃଶ୍ୟତା ନିବାରଣ ଆଶ୍ରମ ଜରିଆରେ ସେ ପ୍ରଚାରପତ୍ରଗୁଡ଼ିକ ଗାଁ ଗାଁରେ ପୁଣି ବଣ୍ଟାହେବାକୁ ଲାଗିଲା ।

ଏତିକିବେଳେ ବିଲାତର ପ୍ରଧାନମନ୍ତ୍ରୀ ତାଙ୍କର ଜାତିଆଣ ନୀତି ଘୋଷଣା କଲେ । ଏହି ନୀତି ଅନୁସାରେ ଅଛୁଆଁ କୁହାଯାଉଥିବା ଲୋକଙ୍କୁ ହିନ୍ଦୁମାନଙ୍କଠାରୁ ଅଲଗା ଗଣାହେବ ଓ ନିର୍ବାଚନରେ ସେମାନେ ନିଜର ଅଲଗା ପ୍ରତିନିଧି ବାଛିବାର ଅଧିକାର ପାଇବେ ।

ଗାନ୍ଧୀଜୀଙ୍କ ନିକଟରେ ମଧ୍ୟ ଜେଲରେ ଏହି ନିଷ୍ପତ୍ତି ପହଞ୍ଚିଲା । ସେ ପ୍ରଥମରୁ ହିଁ ଇଂରେଜଙ୍କୁ ଚେତାବନୀ ଦେଇସାରିଥିଲେ କି ଯଦି ଏପରି କରାଯିବ ତେବେ ସେ ନିଜର ଜୀବନ ସହିତ ବାଜି ଲଗାଇଦେବେ । ଏହି ନିଷ୍ପତ୍ତି ଶୁଣିବା ସଙ୍ଗେ ସଙ୍ଗେ ସେ ଅନଶନ ଆରମ୍ଭ କରିଦେଲେ ।

1932 ମସିହା ସେପ୍ଟେମ୍ବର 20 ତାରିଖରେ ଏହି ଅନଶନ ଆରମ୍ଭ ହେଲା । ସାରା ଦେଶରେ ଲକ୍ଷ ଲକ୍ଷ ଲୋକ ମଧ୍ୟ ଗାନ୍ଧୀଜୀଙ୍କ ପ୍ରାଣ ରକ୍ଷା ପାଇଁ ସେହିଦିନ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କଲେ ଓ ଉପବାସ ରହିଲେ । ଏହି ଉପବାସ କାରଣରୁ ସବର୍ଣ୍ଣ ହିନ୍ଦୁମାନଙ୍କ ମଧ୍ୟରେ ଜାଗୃତି ଆସିଲା । ଅସବର୍ଣ୍ଣ ନେତାମାନଙ୍କ ହୃଦୟ ମଧ୍ୟ ତରଳିଗଲା । ଶେଷରେ ଗାନ୍ଧୀଜୀଙ୍କ ସମ୍ମୁଖରେ ଏକ ରାଜିନାମା ହେଲା ଓ ଏହି ନେତାମାନଙ୍କ ମିଳିତ ଦସ୍ତଖତରେ ବ୍ରିଟିଶ ସରକାରଙ୍କର ନିଷ୍ପତ୍ତିକୁ ରଦ କରିବା ପାଇଁ ଦାବି କରାଗଲା । ଶେଷରେ ସମସ୍ତେ ଗାନ୍ଧୀଜୀଙ୍କ ନେତୃତ୍ୱରେ ଅସ୍ପୃଶ୍ୟତା ନିବାରଣ କରିବାରେ ଏକଜୁଟ ହୋଇଗଲେ । ଗାନ୍ଧୀଜୀଙ୍କର ପ୍ରାଣରକ୍ଷା ହେଲା । ସେ ଅଛୁଆଁ ଲୋକଙ୍କର ନୂଆ ନାମ ରଖିଲେ 'ହରିଜନ' ଅଥବା 'ଈଶ୍ୱରଙ୍କ ଜନ' । ଇଂରାଜୀ, ହିନ୍ଦୀ ଓ ଗୁଜରାଟୀରେ ପ୍ରକାଶିତ ତାଙ୍କ ପତ୍ରିକାର ପୁରାତନ ନାମକୁ ବଦଳାଇ 'ହରିଜନ' ରଖିଲେ । କେବଳ ଏତିକି ନୁହେଁ, ସେ ନିଜର ସାବରମତୀ ଆଶ୍ରମଟିକୁ ମଧ୍ୟ ହରିଜନ ଆନ୍ଦୋଳନର କର୍ମକର୍ତ୍ତାମାନଙ୍କର ଆଶ୍ରମ କରିଦେଲେ ।

ସତ୍ୟାଗ୍ରହୀମାନଙ୍କ ମଧ୍ୟରୁ ଅନେକେ ଏବେ ତାଙ୍କ ପଥ ଅନୁସରଣ କରିବାକୁ ଆରମ୍ଭ କରିଦେଲେ । ହେଲେ ମଧ୍ୟ କିଛି ଲୋକ ସତ୍ୟାଗ୍ରହ ଜାରି ରଖିବା ସପକ୍ଷରେ ଥିଲେ । ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ସାମୂହିକ ସତ୍ୟାଗ୍ରହ ଆନ୍ଦୋଳନ ବନ୍ଦ କରିଦିଆଗଲା; କିନ୍ତୁ ଯେଉଁ ଲୋକ ସତ୍ୟାଗ୍ରହ ଜାରି ରଖିବାପାଇଁ ଚାହୁଁଥିଲେ ତାଙ୍କୁ ବ୍ୟକ୍ତିଗତ ଭାବେ ଏପରି କରିବା ଲାଗି ଅନୁମତି ଦେଇଦିଆଗଲା । ଇତିମଧ୍ୟରେ ଦିଲ୍ଲୀର କେନ୍ଦ୍ରୀୟ ବିଧାନସଭା ପାଇଁ ନିର୍ବାଚନ ମଧ୍ୟ ପାଖେଇ ଆସୁଥିଲା । କଂଗ୍ରେସ ସେହି ନିର୍ବାଚନରେ ନିଜର ପ୍ରତିନିଧି ପଠାଇବାକୁ ମଧ୍ୟ ସିଦ୍ଧାନ୍ତ କରିନେଲେ ।

1935 ମସିହାରେ ବ୍ରିଟିଶ ସରକାର ଭାରତ ପାଇଁ ନୂତନ ଶାସନ ବ୍ୟବସ୍ଥା ଘୋଷଣା କଲେ । ସେହି ଅନୁଯାୟୀ 1937 ମସିହା ଆରମ୍ଭରେ ସବୁ ପ୍ରଦେଶରେ ମଧ୍ୟ ନୂତନ ନିର୍ବାଚନ ହେଲା । ଏହି ନିର୍ବାଚନଗୁଡ଼ିକରେ କଂଗ୍ରେସକୁ ପ୍ରାୟ ସବୁ ପ୍ରଦେଶରେ ଅଦ୍ଭୁତ ସମର୍ଥନ ମିଳିଲା । ଏହି ନିର୍ବାଚନରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଥିଲା ଯେ, ମୁସଲମାନ ସଂଖ୍ୟାଗରିଷ୍ଠ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ ମଧ୍ୟ କଂଗ୍ରେସକୁ ପ୍ରବଳ ସମର୍ଥନ ମିଳିଲା ।

ଗାନ୍ଧୀଜୀଙ୍କ ଅହିଂସାତ୍ମକ ସତ୍ୟାଗ୍ରହର ଜଣେ ବଡ଼ ସେନାପତି ଥିଲେ ଖାନ୍ ଅବଦୁଲ ଗଫର ଖାଁ । ଯଦ୍ୟପି ସେ କଥା-କଥାରେ ମାରିବେ ବା ମରିବେ ବୋଲି ପ୍ରସ୍ତୁତ ହୋଇ ଯାଉଥିଲେ, ତଥାପି ସେ ଅହିଂସା ବିଷୟରେ ଗାନ୍ଧୀଜୀଙ୍କର ସବୁଠାରୁ ନିକଟତମ ଥିଲେ । ବର୍ତ୍ତମାନ ସୁଦ୍ଧା ତାଙ୍କ ନାମ 'ସୀମାନ୍ତ ଗାନ୍ଧୀ' ରୂପେ ରହିଗଲା । ସେ ପେଶ୍ୱାରରେ "ଖୁଦାଇ ଖିଦ୍‌ମତ୍‌ଗାରୋ" ନାମରେ ପଠାଣମାନଙ୍କର ଏକ ଅହିଂସ ଦଳ 1930 ମସିହା ଆନ୍ଦୋଳନ କାଳରେ ଗଠନ କରି ନେଇଥିଲେ । ଦୀର୍ଘକାୟ ପୁଣି ସବଳ ସେହି ପଠାଣମାନଙ୍କ ହାତ ଉପରେ ହାତ ବନ୍ଧା ହୋଇ ସେମାନେ ଚୁପ୍‌ଚାପ୍ ଲାଠି ପ୍ରହାର ସହ୍ୟ କରୁଥିବାର ଦେଖି ସାରା ଦେଶ ଚକିତ ହୋଇ ରହିଗଲା । ସରକାର ସେଠାରେ ଭୟଙ୍କର ଅତ୍ୟାଚାର କରିଥିଲେ । ଥରେ ତ ସୈନ୍ୟବାହିନୀର ଏକ ଗଢ଼ୱାଲ ଦଳକୁ ଏଥିପାଇଁ କୋର୍ଟ ମାର୍ଶାଲ କରାଗଲା, କାରଣ ସେମାନେ ବାହାଦୁର ଅସହାୟ ସତ୍ୟାଗ୍ରହୀମାନଙ୍କ ଉପରେ ଗୁଳି ଚଳାଇବାପାଇଁ ମନାକରିଦେଇଥିଲେ ।

କିନ୍ତୁ ନିର୍ବାଚନରେ ସୀମାନ୍ତ ଗାନ୍ଧୀଙ୍କର ହିଁ ଜୟ ହେଲା ଓ ଭୋଟଦାତାମାନେ କଂଗ୍ରେସକୁ ବିପୁଳ ସମର୍ଥନ ସହିତ ନିର୍ବାଚିତ କରି ସେଠାକାର କାଉନ୍‌ସିଲକୁ ପଠାଇଲେ ।

କଂଗ୍ରେସର ଉଦ୍ଦେଶ୍ୟ ଏହି କାଉନ୍‌ସିଲକୁ ଯାଇ ମନ୍ତ୍ରିମଣ୍ଡଳ ଗଢ଼ିବା ବା ସରକାର ଚଳାଇବା ନଥିଲା ।

ଇଂରେଜ ସରକାର ଦେଖିଲେ ଯେ କଂଗ୍ରେସ ଯଦି ନିଜେ ସରକାର ଗଢ଼ିବାପାଇଁ ପ୍ରସ୍ତୁତ ହେଉନାହାନ୍ତି ତେବେ ସବୁ ଫସର ଫାଟିଯିବ । ଗାନ୍ଧୀଜୀ ଓ ଭାଇସରାୟଙ୍କ ମଧ୍ୟରେ ଦୀର୍ଘ ଆଲୋଚନା ହେଲା । କଂଗ୍ରେସ କହିଲା ଯେ ସେ ଯେତେବେଳେ ମନ୍ତ୍ରୀମଣ୍ଡଳ ଗଢ଼ିବାକୁ ରାଜି ହେବେ ସେତେବେଳେ ସରକାର ପ୍ରତିଶ୍ରୁତି ଦେବେ ଯେ ଗଭର୍ଣ୍ଣର ତାଙ୍କର କାର୍ଯ୍ୟକ୍ରମରେ ହସ୍ତକ୍ଷେପ କରିବେ ନାହିଁ । ବହୁତଦିନଯାଏ ସରକାର ଏହି ପ୍ରତିଶ୍ରୁତି ଦେବେ କି ନାହିଁ ସେ ବିଷୟରେ ଚିନ୍ତିତ ରହିଲେ । କାଉନ୍‌ସିଲର ଅନ୍ୟ ଦଳଙ୍କ ଦ୍ୱାରା ସରକାର ଗଢ଼ିବା ପାଇଁ ମଧ୍ୟ ଚେଷ୍ଟାକଲେ । କିନ୍ତୁ ସେମାନେ ଯେଉଁ ବାଲ୍ ଆଗତ କଲେ ସେଗୁଡ଼ିକୁ କଂଗ୍ରେସ ସଦସ୍ୟମାନେ ବହୁ ମତରେ ଖାରଜ କରିଦେଲେ ।



[ ଖାଁ ଅବ୍ଦୁଲ ଗଫର ଖାଁ ]

ଶେଷରେ ଭାଇସରାୟ କଂଗ୍ରେସର ସର୍ତ୍ତଗୁଡ଼ିକୁ ମାନିନେଲେ । ଇଂରେଜ ସରକାର ଏହି ପ୍ରକାରେ "ଦେଶର ପ୍ରାଦେଶିକ ସ୍ୱରାଜ୍ୟ" ଦେବାପାଇଁ ବାଧ୍ୟ ହେଲେ । ଦେଶର ଅଧିକାଂଶ ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ିଲେ । ସତ୍ୟାଗ୍ରହ ଦ୍ୱାରା କିଛି ବର୍ଷ ମଧ୍ୟରେ ଏହିପରି ଅନେକ କିଛି ସମ୍ଭବପର ହେଲା, ଯାହାକି ଫସାରରେ କେହି କେବେ ହେଲେ କଳ୍ପନା କରିପାରି ନ ଥିଲେ ।

ପ୍ରାଦେଶିକ ସ୍ୱରାଜ୍ୟ ମିଳିବାର ତିନିବର୍ଷ ହୋଇଥିଲା, ସେତେବେଳେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଗଲା । ଭାରତର ନିର୍ବାଚିତ ପ୍ରତିନିଧିମାନଙ୍କର ମତ ନ ନେଇ ଜର୍ମାନୀ ବିରୁଦ୍ଧରେ ନିଜେ ଲଢ଼ୁଥିବା ଯୁଦ୍ଧରେ ଇଂଲଣ୍ଡ ଭାରତକୁ ସାମିଲ କରିନେଲା ।

ଏହା ସାରା ଦେଶଲାଗି ଏକ ବଡ଼ ଅପମାନ ଥିଲା । କଂଗ୍ରେସର ନିର୍ଦ୍ଦେଶ ଅନୁଯାୟୀ ସବୁ ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳଗୁଡ଼ିକ ଇସ୍ତଫା ଦେଇଦେଲେ ।

ଭାରତର ଯୁଦ୍ଧକାଳୀନ ଚର୍ଚ୍ଚିଲ ସରକାର, ଯେ କି ନାନା ବିପର୍ଯ୍ୟୟ ସତ୍ତ୍ୱେ ଧୈର୍ଯ୍ୟ ହରାଇ ନ ଥିଲେ ଓ ବାହାଦୁରିର ସହିତ ଯୁଦ୍ଧ ଚଳାଇଥିଲେ, ସେମାନେ ଭାରତର ସ୍ୱାଧୀନତା ବିଷୟରେ ବହୁତ ପ୍ରତିକୂଳ ମତ ପୋଷଣ କରୁଥିଲେ । ଏଥିପାଇଁ ଯେତେବେଳେ 1942 ମସିହାରେ ଜର୍ମାନୀର ମିତ୍ରଶକ୍ତି ଜାପାନ ସିଙ୍ଗାପୁର ଓ ବର୍ମାରୁ ଇଂରେଜମାନଙ୍କୁ ସମ୍ପୂର୍ଣ୍ଣଭାବେ ବହିଷ୍କାର କରିଦେଲେ ଓ ଭାରତ ଅଭିମୁଖେ ଅଗ୍ରସର ହେବାର ପ୍ରସ୍ତୁତି ଆରମ୍ଭ କରିଦେଲେ, ସେତେବେଳେ କଂଗ୍ରେସ ସମ୍ମୁଖରେ ପୁଣି ଦେଶବ୍ୟାପୀ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିବା ବ୍ୟତୀତ ଅନ୍ୟ କୌଣସି ଉପାୟ ରହିଲା ନାହିଁ । ଗାନ୍ଧୀଜୀ ଇଂରେଜମାନଙ୍କୁ ପରିଷ୍କାର ଭାବେ କହିଲେ ଯେ ଭାରତ ଛାଡ଼ି ଚାଲିଯାଅ, ଜାପାନୀମାନଙ୍କଠାରୁ ଆମେ ଆମ ନିଜକୁ ବଞ୍ଚାଇନେବୁ ।

ଏହି ପରିସ୍ଥିତିରେ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କୁ ଆମେ ଭୁଲିପାରିବା ନାହିଁ । ମହାଯୁଦ୍ଧ ଆରମ୍ଭ ହେବା ପରେ ସେ ନିଜ ଘରେ ନଜରବନ୍ଦୀ ଥିବା ଅବସ୍ଥାରେ ହଠାତ୍ କୌଣସି ଉପାୟରେ ଖସି ଚାଲିଯାଇଥିଲେ । ଦିନେ ଅକସ୍ମାତ୍ ଜର୍ମାନୀର ବର୍ଲିନ୍ ରେଡ଼ିଓରେ ତାଙ୍କର କଣ୍ଠସ୍ୱର ଶୁଣାଗଲା । ତାହା ପରେ ସୁଭାଷ ବୋଷ କେତେବେଳେ ଜର୍ମାନୀରେ ରହିଲେ ତ କେତେବେଳେ ଇଟାଲୀରେ ଓ କେବେ ଜାପାନରେ । ଭାରତକୁ ଦାସରୂପେ ରଖିବାକୁ ଚାହୁଁଥିବା ଇଂରେଜମାନଙ୍କର ସବୁ ଶତ୍ରୁ ତାଙ୍କର ମିତ୍ର ହୋଇଗଲେ ।

## ଆଜାଦ ହିନ୍ଦ୍ ଫୌଜ ଓ 'ଭାରତ ଛାଡ଼' ଆନ୍ଦୋଳନ

ଜାପାନୀମାନଙ୍କ ହାତରେ ବନ୍ଦୀହୋଇଥିବା ଭାରତୀୟ ସୈନ୍ୟମାନଙ୍କୁ ନେଇ ସୁଭାଷବୋଷ "ଆଜାଦ ହିନ୍ଦ୍ ଫୌଜ" ନାମକ ଏକ ସେନା ଗଢ଼ିଲେ ଓ ନିଜେ ତାହାର ମୁଖ୍ୟ ସେନାପତି ହେଲେ । ତାଙ୍କର ସୈନିକଗଣ ତାଙ୍କୁ "ନେତାଜୀ" ବୋଲି କହିବାକୁ ଲାଗିଲେ । ନେତାଜୀ ସେତେବେଳେ "ଜୟ ହିନ୍ଦ୍" ଶବ୍ଦକୁ ସାମରିକ ସଲାମ୍ ରୂପେ ପ୍ରଚଳନ କଲେ ।

1942 ମସିହାରେ ଏକ ଦିଗରେ ନେତାଜୀ ଜାପାନରୁ ରେଡ଼ିଓ ଜରିଆରେ ଭାରତବାସୀଙ୍କୁ ଆଶା ଭରସା ଦେବାକୁ ଆରମ୍ଭ କଲେ ଯେ ଇଂରେଜଙ୍କୁ ବହିଷ୍କାର କରି ଭାରତକୁ ସ୍ୱାଧୀନ କରିବା ଦିଗରେ ଜାପାନ ସେମାନଙ୍କୁ ସାହାଯ୍ୟ କରିବ । ଅନ୍ୟ ଦିଗରେ ଦେଶ ଭିତରେ ଗାନ୍ଧୀଜୀ ଦୃଢ଼ଭାବେ ଧ୍ୱନି ଦେଲେ, "ଇଂରେଜ ଭାରତ ଛାଡ଼ିଦିଅ ।"

ଇଂରେଜ ସରକାର ସୈନିକମାନଙ୍କୁ ଏହା ମଧ୍ୟ ଆଦେଶ ଦେଇଦେଇଥିଲେ କି ଆସାମ, ବଙ୍ଗଳା ଓ ବିହାରକୁ ସେମାନେ ଆବଶ୍ୟକ ହେଲେ ପଛକୁ ଘୁଞ୍ଚିବା ପାଇଁ ପ୍ରସ୍ତୁତ

ରହିବେ । କଂଗ୍ରେସ ଆହୁରି ଜାଣିବାକୁ ପାଇଲା ଯେ ପଛଘୁଞ୍ଚା ଦେଲାବେଳେ ଇଂରେଜମାନେ ବଡ଼ ବଡ଼ କାରଖାନା ଓ ରେଲପୋଲଗୁଡ଼ିକୁ ସବୁ ନଷ୍ଟ କରି ଯିବେ, ଯେପରିକି ସେଗୁଡ଼ିକ ଜାପାନୀମାନଙ୍କ ହାତରେ ନପଡ଼େ । ଗାନ୍ଧୀଜୀ ଏହାର ଘୋର ବିରୋଧ କଲେ ଓ କହିଲେ ଯେ, ଭାରତର ଏତେ ମୂଲ୍ୟବାନ ସମ୍ପତ୍ତିକୁ ନଷ୍ଟ କରିବାର ଅଧିକାର ଇଂରେଜଙ୍କୁ କିଏ ଦେଲା ?

ଶେଷରେ କଂଗ୍ରେସ ଓ ସରକାରଙ୍କ ମଧ୍ୟରେ 1942 ମସିହା ଅଗଷ୍ଟ ମାସରେ ଖୋଲା-ଖୋଲି ଯୁଦ୍ଧ ଆରମ୍ଭ ହୋଇଗଲା । "କର ନଚେତ୍ ମର"—ଗାନ୍ଧୀଜୀଙ୍କର ସାରା ଦେଶବାସୀଙ୍କୁ ଏହା ହିଁ ଆଦେଶ ଥିଲା ।

ଗାନ୍ଧୀଜୀଙ୍କର ଏହି ନିର୍ଦ୍ଦେଶ ପରେ ଦୁଇ ପକ୍ଷରୁ ଘମାଘୋଟ ଯୁଦ୍ଧ ଆରମ୍ଭ ହୋଇଗଲା । ସାରା ଦେଶରେ ଶ୍ରେଷ୍ଠ ବଡ଼ ସବୁ କଂଗ୍ରେସ ନେତାମାନଙ୍କୁ ସରକାର ଜେଲ୍‌ରେ ବନ୍ଦୀ କରି ଦେଲେ । ନେତାମାନଙ୍କର ଅନୁପସ୍ଥିତିରେ ଜନସାଧାରଣ ରେଲ ଲାଇନ, ଟେଲିଗ୍ରାଫ ତାରଖୁଣ୍ଟ, ରାସ୍ତା ଓ ପୋଲଗୁଡ଼ିକୁ ଭଙ୍ଗାରୁଜା ଆରମ୍ଭ କରିଦେଲେ । ସୈନ୍ୟବାହିନୀ ଓ ପୋଲିସ ଗୁଳିଚଳାଇଲେ ।

ହଜାର ହଜାର ଲୋକ ମରିଗଲେ । ଏହା ବଦଳରେ ଜନସାଧାରଣ ମଧ୍ୟ ଅନେକ ପୋଲିସ ଥାନା ଭାଙ୍ଗି ପୋଡ଼ି ଧ୍ୱଂସ କରିଦେଲେ । କିଛିଦିନ ପାଇଁ ଯେପରି ସାରା ଦେଶରେ ନିଆଁ ଲାଗିଯାଇଥିଲା ।

ରେଲଗାଡ଼ି ଚଳାଚଳ ବନ୍ଦ ହୋଇଗଲା । କାରଣ ରେଲ୍‌ଲାଇନ୍‌ଗୁଡ଼ିକୁ ସ୍ଥାନେ ସ୍ଥାନେ ବହୁ ଦୂର ପର୍ଯ୍ୟନ୍ତ ଉଖାଡ଼ି ନେଇ ଫୋପାଡ଼ି ଦିଆଯାଇଥିଲା । ସୈନ୍ୟମାନଙ୍କର ଯିବା ଆସିବା କେତେ ଦିନ ପର୍ଯ୍ୟନ୍ତ ବନ୍ଦ ରହିଲା । ରାସ୍ତାଗୁଡ଼ିକ ମଧ୍ୟ ସ୍ଥାନେ ସ୍ଥାନେ ବହୁ ଦୂର ପର୍ଯ୍ୟନ୍ତ ଅବରୋଧ କରିଦିଆଯାଇଥିଲା ଓ ଛୋଟ ଛୋଟ କେତେଗୁଡ଼ିଏ ପୋଲ ଭାଙ୍ଗି ଦିଆଯାଇଥିଲା । ସୈନ୍ୟମାନଙ୍କର ଜିପ୍ ଓ ଟ୍ରକ୍ ପାଇଁ ରାସ୍ତା ବନ୍ଦ ହୋଇଯାଇଥିଲା ।

ସାରା ଦେଶରେ ଯେଉଁ ଭଙ୍ଗାରୁଜା ହୋଇଥିଲା ସେ ସବୁର ମରାମତି କରିବା ପାଇଁ ଇଂରେଜଙ୍କୁ ମାସ ମାସ ଲାଗିଯାଇଥିଲା ।

ଭଙ୍ଗାରୁଜା କାର୍ଯ୍ୟକଳାପ ଅଭିଯୋଗରେ ଗିରଫ କରାଯାଇଥିବା ଲୋକଙ୍କୁ ଜେଲ୍‌ରେ କଠିନ ଯନ୍ତ୍ରଣା ଦିଆଗଲା, ଯେପରିକି ସେମାନେ ନିଜର ଲୁଚି ରହିଥିବା ସାଥୀମାନଙ୍କ ବିଷୟରେ ସରକାରଙ୍କୁ ଖବର ଦେଇଦେବେ । ହଜାରିବାଗ ଜେଲ୍‌ରୁ ଖସି ପଳାଇବା ପରେ ଲୁଚିଛପି ଲୋକଙ୍କୁ ସଙ୍ଗଠିତ କରୁଥିବା ଜୟପ୍ରକାଶ ନାରାୟଣଙ୍କୁ ଶେଷରେ ପୁଣି ଗିରଫ କରି ଲାହୋର ଜେଲ୍‌ରେ ବନ୍ଦୀ କରିଦିଆଗଲା । ଘଣ୍ଟା ଘଣ୍ଟା ଧରି ତାଙ୍କୁ ବରଫ ମୁଣ୍ଡା ଉପରେ



[ସୁଭାଷଚନ୍ଦ୍ର ବୋଷ]

ବସାଇ ରଖାଯାଇଥିଲା, ଯେମିତକି ଉପସ୍ଥିତ ହୋଇ ସବୁ ଗୁପ୍ତତଥ୍ୟ ସେ ପ୍ରକାଶ କରିଦେବେ ।

ଦୁଇ ଅଢ଼େଇ ବର୍ଷପର୍ଯ୍ୟନ୍ତ ସାରାଦେଶ ଏକ ବଡ଼ ଜେଲ୍‌ଖାନାରେ ପରିଣତ ହୋଇଗଲା । ଇଂରେଜ ସୈନ୍ୟମାନଙ୍କୁ ମଧ୍ୟ ପଦେ ପଦେ ବହୁ ବିପର୍ଯ୍ୟୟର ସମ୍ମୁଖୀନ ହେବାକୁ ପଡ଼ୁଥିଲା ।

କିନ୍ତୁ ଇତିମଧ୍ୟରେ ୟୁରୋପରେ ଜର୍ମାନୀ କ୍ରମେ ଦୁର୍ବଳ ଦେଖାଯିବାକୁ ଲାଗିଲା । ମିତ୍ରଶକ୍ତି ସଂଘ କ୍ରମେ ବିଭିନ୍ନ ସ୍ଥାନରେ ବିଜୟ ଲାଭ କରିବାକୁ ଆରମ୍ଭ କରିଦେଲେ । ରୁଷ୍ ସହିତ ଲଢ଼ାଇରେ ଯେତେବେଳେ ଜର୍ମାନୀ ସୈନ୍ୟଙ୍କୁ ପଛଘୁଞ୍ଚା ଦେବାକୁ ପଡ଼ିଲା ସେତେବେଳେ ଆମେରିକାର ସୈନ୍ୟବାହିନୀ ସାହାଯ୍ୟରେ ଇଂରେଜମାନେ ଜର୍ମାନୀକୁ ଘେରାଉ କରିବା ପାଇଁ ଉପାୟ ପାଇଥିଲେ । ଏଣେ ପୂର୍ବରେ ଜାପାନ ମଧ୍ୟ ଦୁର୍ବଳ ହୋଇପଡ଼ିଲା ।

ଶେଷରେ ଗାନ୍ଧିଜୀଙ୍କୁ ଜେଲ୍‌ରୁ ମୁକ୍ତ କରାଗଲା । ଅନ୍ୟ ନେତାମାନେ ମଧ୍ୟ ଆସ୍ତେ ଆସ୍ତେ ଜେଲରୁ ବାହାରିବାକୁ ଲାଗିଲେ । ସେମାନଙ୍କ ସମର୍ଥନ ପାଇବା ଲାଗି ସରକାରଙ୍କ ତରଫରୁ ପୁଣି ଚେଷ୍ଟା ଆରମ୍ଭ ହେଲା । କିନ୍ତୁ ଦେଶର ନେତାମାନେ ପୂର୍ଣ୍ଣ ସ୍ୱାଧୀନତା ଛଡ଼ା ଅନ୍ୟ କୌଣସି ପାଇଁ ରାଜିନାମା କରିବାକୁ ପ୍ରସ୍ତୁତ ନଥିଲେ ।

1945 ମସିହାରେ ଦ୍ୱିତୀୟ ମହାଯୁଦ୍ଧ ସମାପ୍ତ ହେଲା ଓ ତା ପୂର୍ବରୁ ହିଁ ଭାରତର ପୂର୍ବ ସୀମାନ୍ତରେ ଜାପାନର ପରାଜୟ ଆରମ୍ଭ ହୋଇଯାଇଥିଲା । ନେତାଜୀ ସୁଭାଷ ବୋଷଙ୍କ ଆଜାଦ ହିନ୍ଦ୍ ଫୌଜର ବହୁତ ଲୋକଙ୍କୁ ଗିରଫ କରି ଭାରତକୁ ଅଣାଗଲା ଓ ସେମାନଙ୍କ ଉପରେ ରାଜଦ୍ରୋହ ମକଦ୍ଦମା କରାଗଲା । ଏହି ବାହାଦୁର ଦେଶଭକ୍ତମାନଙ୍କୁ ମୁକ୍ତ କରିବା ଲାଗି ଏକ ବଳିଷ୍ଠ ଧ୍ୱନି ଉଠିଲା ଓ ଅନେକ ସ୍ଥାନରେ ବିକ୍ଷୋଭ ପ୍ରଦର୍ଶନ ମଧ୍ୟ ହେଲା । ଜାପାନର ପରାଜୟ ଓ ମହାଯୁଦ୍ଧର ସମାପ୍ତି ସଙ୍ଗେ ସଙ୍ଗେ ଖବର ଆସିଲା ଯେ ନେତାଜୀ ସୁଭାଷ ବୋଷଙ୍କ ଉଡ଼ାଜାହାଜ ଜାପାନ ଯିବା ବାଟରେ ଜଳିଗଲା ଏବଂ ତାଙ୍କର ମୃତ୍ୟୁ ହୋଇଗଲା । ଏହି ଦୁଃସମ୍ବାଦରେ ସାରା ଦେଶରେ ଗଭୀର ଶୋକଗ୍ରସ୍ତ ଖେଳିଗଲା ।

ଆଜାଦ ହିନ୍ଦ୍ ଫୌଜର ଅଫିସର ଓ ସିପାହିମାନଙ୍କ ଉପରେ ଦିଲ୍ଲୀର ଲାଲକିଲ୍ଲାରେ ମକଦ୍ଦମା ଆରମ୍ଭ ହେଲା । ସେମାନଙ୍କୁ ମୁକ୍ତ କରିବା ଲାଗି ପ୍ରସିଦ୍ଧ ଓକିଲମାନେ ନିଜର ସବୁ ଶକ୍ତି ଲଗାଇଦେଲେ, ଏପରିକି ଜବାହରଲାଲ ନେହେରୁ ମଧ୍ୟ ନିଜର ବାରିଷ୍ଟର କଳା ପୋଷାକ ପିନ୍ଧି ସେହି ମକଦ୍ଦମାରେ ସେମାନଙ୍କ ତରଫରୁ ଲଢ଼ିବା ପାଇଁ ଯାଇ ପହଞ୍ଚିଲେ ।

ମକଦ୍ଦମାର ବିବରଣୀ ଖବରକାଗଜଗୁଡ଼ିକରେ ବିସ୍ତୃତ ଭାବେ ଛପା ହେବାକୁ ଲାଗିଲା । ଏହି ମକଦ୍ଦମା ଫଳାଫଳରେ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଭାରତୀୟ ଯେଉଁ କାହାଣୀମାନ ଲୋକଙ୍କ ନିକଟରେ ପହଞ୍ଚିବାକୁ ଲାଗିଲା, ସେସବୁ ପଢ଼ି ଲୋକେ ନେତାଜୀଙ୍କୁ ଆହୁରି ପ୍ରଶଂସା କରିବାକୁ ଲାଗିଲେ । ଅନେକଙ୍କର ବିଶ୍ୱାସ ମଧ୍ୟ ହେଲାନି ଯେ ନେତାଜୀଙ୍କର ସତରେ ମୃତ୍ୟୁ ହୋଇଯାଇଛି । ଆଜାଦ ହିନ୍ଦ୍ ଫୌଜର ଅନ୍ୟ ତିନି ନେତା—ଜେନେରାଲ ଶାହ ନବାଜ, କର୍ଣ୍ଣେଲ୍ ସହଗଲ ଓ ମେଜର୍ ଧିଲୋଁଙ୍କ ନାମ ସେହି ମକଦ୍ଦମା ଫଳାଫଳରେ ପ୍ରତିଦିନ ଖବରକାଗଜଗୁଡ଼ିକର ମୁଖ୍ୟ ଖବରରେ ଆସୁଥିଲା । ପ୍ରତ୍ୟେକ ଲୋକର ମୁହଁରେ ସେହିମାନଙ୍କ କଥା ଶୁଣାଗଲା ।

ଶେଷରେ ସରକାରଙ୍କ ଆସନ ଟଳମଳ ହୋଇ ଉଠିଲା । ଅଦାଲତ ସିନା ଆଇନ ଅନୁସାରେ ଆଜାଦ ହିନ୍ଦ୍ ଫୌଜର ସେହି ନେତାମାନଙ୍କୁ ଦୀର୍ଘଦିନ ଲାଗି କାରାଦଣ୍ଡ ଆଦେଶ ଦେଲେ, କିନ୍ତୁ ଜନତାଙ୍କ କ୍ରୋଧକୁ ଡରି ସରକାର ସେମାନଙ୍କୁ ସଙ୍ଗେ ସଙ୍ଗେ ଖଲାସ କରି ଦେଲେ । ସାରା ଦେଶରେ ଏହି ନେତାମାନଙ୍କ ସମ୍ମାନାର୍ଥେ ଶୋଭାଯାତ୍ରାମାନ ବାହାରିଲା ।

ନେତାଜୀଙ୍କ ଦ୍ୱାରା ଦିଆଯାଇଥିବା "ଜୟ ହିନ୍ଦ୍" ଧ୍ୱନି ସେହି ସମୟଠାରୁ ଭାରତବାସୀଙ୍କର ସବୁଠାରୁ ଆଦରର ଧ୍ୱନି ହୋଇଗଲା ।

ସାରା ଦେଶରେ ପୁନଶ୍ଚ ଧ୍ୱଂସାତ୍ମକ ଆନ୍ଦୋଳନ ଜୋର୍‌ସୋର୍‌ରେ ଆରମ୍ଭ ହୋଇଗଲା । କଲିକତା ପ୍ରଭୃତି ସ୍ଥାନରେ କିଛିଦିନ ପାଇଁ ଏପରି ଅବସ୍ଥା ହୋଇଗଲା ଯେ ଇଂରେଜମାନେ ରାସ୍ତାକୁ ବାହାରିବା କଷ୍ଟକର ହୋଇଗଲା । ଯୁବକଗୋଷ୍ଠୀ ଗୋରା ପୋଲିସ ଓ ସୈନ୍ୟବାହିନୀଙ୍କ ଜିପ୍‌ଗୁଡ଼ିକ ରାସ୍ତା ଉପରେ ଅଟକାଇ ଜଳାଇବାରେ ଲାଗିଗଲେ । ଲୋକଙ୍କ ହୃଦୟରେ ସୈନ୍ୟଙ୍କ ପ୍ରତି ଡର ଯେମିତି ଜମା ନଥିଲା ! ଏପରିକି ଛୋଟ ଛୋଟ ପିଲାମାନେ ମଧ୍ୟ ଗୋରା ପ୍ରହରୀମାନଙ୍କ ସାମନାରେ ତାଙ୍କୁ ଜବାବ ଦେବାକୁ ଡରୁନଥିଲେ ।

ବିପ୍ଳବର ଅଗ୍ନି ସ୍ଫୁଲିଙ୍ଗ ଗଗନମଣ୍ଡଳରେ ଏପରି ବ୍ୟାପିଗଲା ଯେ ଭାରତୀୟ ସୈନ୍ୟ-ବାହିନୀରେ ମଧ୍ୟ ବିଦ୍ରୋହର ଲକ୍ଷଣ ଦେଖାଦେବାକୁ ଲାଗିଲା । 1946 ମସିହା ଫେବୃଆରୀ ମାସରେ ନୌବାହିନୀର ଭାରତୀୟ ସୈନିକମାନେ ମଧ୍ୟ ବିଦ୍ରୋହ କରିଦେଲେ ଓ କେତେ ଦିନ ପର୍ଯ୍ୟନ୍ତ ସେମାନେ ନିଜର ଗୋରା ଅଫିସରମାନଙ୍କର ଆଦେଶ ମାନିବା ଲାଗି ମନା କରିଦେଲେ । ବମ୍ବେରେ ସେମାନଙ୍କ ସମର୍ଥନରେ ଜନତା ମଧ୍ୟ ଧର୍ମଘଟ କଲେ । କେତେକ ଲୋକ ସରକାରୀ କୋଠାବାଡ଼ି ଓ ସମ୍ପତ୍ତି ଜଳାଇବା ଓ ଲୁଟ କରିବା ଆରମ୍ଭ କରିଦେଲେ । ପୋଲିସ ଗୁଳି ଚଳାଇଲେ—ଦୁଇ ଶହରୁ ଅଧିକ ଲୋକ ନିହତ ହେଲେ । ସର୍ଦ୍ଦାର ପଟେଲ ମଧ୍ୟସ୍ଥ ହୋଇ କେନ୍ଦ୍ର ସରକାର ଓ ଭାରତୀୟ ସୈନିକଙ୍କ ମଧ୍ୟରେ ଯଦି ରାଜିନାମା କରାଇ ନଥାନ୍ତେ ତେବେ ଏହି ଅଗ୍ନି ଯେ କେତେଦୂର ପର୍ଯ୍ୟନ୍ତ ବ୍ୟାପିଥାଆନ୍ତା ତାହା ଜଣାନଥିଲା ।

ମହାଯୁଦ୍ଧ ସମାପ୍ତ ହେବା ହେତୁ ବିଲାତରେ ପୁଣି ଥରେ ସାଧାରଣ ନିର୍ବାଚନ ହୋଇ ସାରିଥିଲା ଓ ସେଠାରେ ଚର୍ଚ୍ଚିଲ ସରକାରଙ୍କ ସ୍ଥାନରେ ଅଟଲିଙ୍କର ଶ୍ରମିକଦଳ ଶାସନ କ୍ଷମତା ପାଇଥିଲେ । ଭାରତରେ ମଧ୍ୟ ପୁନର୍ବାର ପ୍ରାଦେଶିକ ସ୍ୱାୟତ୍ତଶାସନ ଚାଲୁ କରି ଦିଆଗଲା ଓ କାଉନ୍‌ସିଲ୍‌ଗୁଡ଼ିକ ପାଇଁ ନୂତନ ନିର୍ବାଚନ ହୋଇଯାଇଥିଲା । ଯୁଦ୍ଧ ପୂର୍ବରୁ ଯେଉଁ ଯେଉଁ ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଥିଲା ପୁଣି ସେହି ପ୍ରଦେଶଗୁଡ଼ିକରେ ନିର୍ବାଚନ ଜିଣି କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିଲା । କିନ୍ତୁ ଇଂରେଜ ସରକାର ଭଲରୂପେ ବୁଝିଥିଲେ ଯେ

ଏବେ ଭାରତର ଲୋକେ ଏହି ଅସମ୍ପୂର୍ଣ୍ଣ ସ୍ୱରାଜ୍ୟରେ ସନ୍ତୁଷ୍ଟ ହୋଇ ରହି ପାରିବେ ନାହିଁ । ପୂର୍ଣ୍ଣ ସ୍ୱରାଜ୍ୟ ଦେବାକୁ ବେଶି ଡେରି କରାଗଲେ କେବଳ ଯେ ଇଂରେଜଙ୍କୁ ଏହି ଦେଶରୁ ଅପମାନିତ ହୋଇ ବାହାରିଯିବାକୁ ହେବ, ସେତିକି ନୁହେଁ; ବରଂ ସ୍ୱାଧୀନ ଭାରତ ଚିରଦିନ ପାଇଁ ବ୍ରିଟେନର ଶତ୍ରୁ ହୋଇ ରହିଯିବ ।

## କ୍ୟାବିନେଟ ମିଶନ

ଶେଷକୁ ଭାରତର ସ୍ୱରାଜ୍ୟର ରୂପରେଖ ପ୍ରସ୍ତୁତ କରିବା ପାଇଁ ବ୍ରିଟିଶ ମନ୍ତ୍ରିମଣ୍ଡଳର ତିନିଜଣ ସଦସ୍ୟଙ୍କୁ ଏଠାକୁ ପଠାଗଲା । କିନ୍ତୁ ଇଂରେଜମାନେ ବର୍ଷ ବର୍ଷ ଧରି ହିନ୍ଦୁସ୍ଥାନର ଲୋକମାନଙ୍କ ମଧ୍ୟରେ ଯେଉଁ ଭେଦଭାବ ଜନ୍ମାଇବାକୁ ଚେଷ୍ଟା କରିଥିଲେ ତାହା ଏବେ ଏତେ ବେଶି ବଢ଼ିଯାଇଥିଲା ଯେ ଅବସ୍ଥା ଇଂରେଜମାନଙ୍କ ଆୟତ୍ତାଧୀନ ନ ଥିଲା । ହିନ୍ଦୁ ହିନ୍ଦୁଙ୍କ ମଧ୍ୟରେ ଅଥବା ସବର୍ଣ୍ଣ ଓ ଅସ୍ପୃଶ୍ୟ କୁହାଯାଉଥିବା ଲୋକଙ୍କ ମଧ୍ୟରେ ଇଂରେଜମାନେ ବିଭେଦର ଯେଉଁ ବୀଜ ବପନ କରିବାକୁ ଚାହୁଁଥିଲେ ସେ ସବୁ ଗାନ୍ଧୀଙ୍କ ଅନଶନ ଓ ହରିଜନ ଆନ୍ଦୋଳନରେ ଲୋପପାଇଯାଇଥିଲା । କିନ୍ତୁ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ଥିବା ବିଭେଦ ଅବସ୍ଥାଚକ୍ରରେ ବଢ଼ିଯାଇଥିଲା ।

ଭାରତରେ ଇଂରେଜମାନେ ଯେଉଁ କାଦୁଅରେ ଗୋଡ଼ ପୂରେଇଥିଲେ ମହାଯୁଦ୍ଧ ପରେ ପରେ ସେଥିରୁ ମୁକ୍ତ ପାଇବାଲାଗି ଉପାୟ ଖୋଜିବାକୁ ବ୍ରିଟିଶ ମନ୍ତ୍ରିମଣ୍ଡଳର ତିନିଜଣ ସଦସ୍ୟ ଏଠାକୁ ଆସିଲେ । କିନ୍ତୁ ମୁସଲିମ୍ ଲିଗ୍‌ର ନେତା ମହମ୍ମଦ ଅଲ୍ଲୀ ଜିନ୍ନା ମଝିରେ ବିଭ୍ରାଟ ପୁରେଇଲେ । ସେ କହିଲେ ଯେ ଭାରତକୁ ଯଦି ଦୁଇଖଣ୍ଡ ନକରାଯାଏ ତେବେ କେନ୍ଦ୍ରୀୟ ସରକାରରେ ହିନ୍ଦୁ ମୁସଲମାନ ମନ୍ତ୍ରୀଙ୍କ ସଂଖ୍ୟା ସମାନ ସମାନ ରଖାଯାଉ । ପୁନଶ୍ଚ ମୁସଲମାନ ମନ୍ତ୍ରୀମାନେ କେବଳ ମୁସଲିମ୍ ଲିଗ୍‌ର ଲୋକ ହିଁ ହେବେ କିମ୍ବା ଜିନ୍ନା ସାହେବ ସେମାନଙ୍କୁ ବାଛିବେ ।

ଏଥିଲାଗି କଂଗ୍ରେସ ବା କିପରି ରାଜି ହୁଅନ୍ତା ? କଂଗ୍ରେସକୁ ଏକ ହିନ୍ଦୁ ସଂସ୍ଥା ବୋଲି ସ୍ୱୀକାର କରିବା ବା କଂଗ୍ରେସର ମୁସଲମାନ ସଭ୍ୟଙ୍କ ସହ ବିଶ୍ୱାସଘାତକତା କରିବାର ପ୍ରଶ୍ନ ଉଠୁ ନ ଥିଲା ।

ବ୍ରିଟିଶ ମନ୍ତ୍ରିମଣ୍ଡଳର ଯେଉଁ ତିନିଜଣ ମନ୍ତ୍ରୀ କୌଣସି ଉପାୟ ଖୋଜି ବାହାର କରିବାକୁ ଆସିଥିଲେ ସେମାନେ ପରିଶ୍ରମ କରି ଥକିଗଲେ, କିନ୍ତୁ ଜିନ୍ନା ସାହେବଙ୍କୁ ରାସ୍ତାକୁ ଆଣିପାରିଲେ ନାହିଁ ।

ସ୍ୱରାଜ୍ୟର ରୂପରେଖ କ'ଣ ହେବ, କେନ୍ଦ୍ରୀୟ ସରକାର କିପରି ଗଢ଼ାଯିବ, ସବୁ ଶ୍ରେଣୀର ଲୋକଙ୍କୁ ସରକାରରେ କିପରି ପ୍ରତିନିଧିତ୍ୱ ମିଳିବ—ଏହି ସବୁ ବିଷୟ ସ୍ଥିର କରିବା

ଲାଗି ଓ ସେ ସମ୍ପର୍କୀୟ ବିଧାନ ପ୍ରଣୟନ କରିବା ଲାଗି ବ୍ରିଟିଶ ସରକାର ଭାରତୀୟମାନଙ୍କର ଏକ ବିଧାନ ପରିଷଦ ଗଢ଼ିବା ଲାଗି ଠିକ୍ କଲେ । ଆହୁରି ମଧ୍ୟ ଠିକ୍ ହେଲା, ସେ ପର୍ଯ୍ୟନ୍ତ ଅସ୍ଥାୟୀ କେନ୍ଦ୍ରୀୟ ସରକାରକୁ ଚଳାଇବା ଲାଗି ଏକ ମନ୍ତ୍ରିମଣ୍ଡଳ ଭାଇସ୍‌ରାୟଙ୍କୁ ସାହାଯ୍ୟ କରିବେ ।

କଂଗ୍ରେସ ତ ଏହି ନିଷ୍ପତ୍ତିକୁ ସ୍ୱୀକାର କରିନେଲେ, କିନ୍ତୁ ଜିନ୍ନା ସାହେବ ନିଜର ପୂର୍ବ ସର୍ତ୍ତରେ ଅଡ଼ିବସିଲେ । ପୁନଶ୍ଚ ସେ ଅନୁଭବ କଲେ ଯେ ବିଳାତ ସରକାର ତାଙ୍କୁ ସମ୍ପୂର୍ଣ୍ଣ ଭାବେ ସନ୍ତୁଷ୍ଟ ନ କରି ଏ ଦେଶ ଛାଡ଼ି ଚାଲିଯିବା ଉପରେ । ତେଣୁ ଇଂରେଜ ସରକାରଙ୍କୁ ଡରାଇବା ଓ ନୁଆଁଇବା ଆଶାରେ 1946 ମସିହା ଅଗଷ୍ଟ 16 ତାରିଖକୁ ଦେଶ ସାରା ମୁସଲମାନମାନଙ୍କ ପାଇଁ "ପ୍ରତ୍ୟକ୍ଷ କାର୍ଯ୍ୟାନୁଷ୍ଠାନ ଦିବସ" ରୂପେ ସେ ଘୋଷଣା କରିଦେଲେ । ଏହି ପ୍ରତ୍ୟକ୍ଷ କାର୍ଯ୍ୟାନୁଷ୍ଠାନ ପ୍ରକୃତରେ ଇଂରେଜମାନଙ୍କ ବିରୁଦ୍ଧରେ ନଥିଲା, ଏହାର ଉଦ୍ଦେଶ୍ୟ ଥିଲା କଂଗ୍ରେସର ବିରୋଧ କରିବା ଓ ହିନ୍ଦୁ-ମୁସଲମାନମାନଙ୍କ ମଧ୍ୟରେ ଗୃହଯୁଦ୍ଧ ଆରମ୍ଭ କରିବା ।

ହିନ୍ଦୁ-ମୁସଲମାନମାନଙ୍କ ଏକତା ଲାଗି ଗାନ୍ଧୀଜୀ ଓ କଂଗ୍ରେସ ବର୍ଷ ବର୍ଷ ଧରି ଯେଉଁ ପରିଶ୍ରମ କରିଥିଲେ ତାହା ଗୋଟିଏ ଦିନ ଭିତରେ ପାଣିଫାଟିଗଲା ।

ଆଉ କିଛି ଉପାୟ ନ ଥିଲା । ସାରା ଦେଶରେ ହିନ୍ଦୁ-ମୁସଲମାନ ଦଙ୍ଗା ଦାବାଗ୍ନି ପରି ବ୍ୟାପିଗଲା । ପ୍ରଥମେ କଲିକତାରେ ଭୟଙ୍କର ରକ୍ତପାତ ହେଲା । ପୁଣି ବଙ୍ଗଳାର ଢାକା ଓ ନୂଆଖାଲି ପ୍ରଭୃତି ସ୍ଥାନମାନଙ୍କରେ ଯେଉଁଠି ମୁସଲମାନମାନଙ୍କ ସଂଖ୍ୟା ବହୁତ ଥିଲା ସେଠାରେ ହିନ୍ଦୁମାନେ କଟାହେଲେ; ଆଉ ବିହାର ପ୍ରଭୃତି ଯେଉଁଠି ହିନ୍ଦୁଙ୍କ ସଂଖ୍ୟା ଅଧିକ ଥିଲା ସେଠାରେ ମୁସଲମାନମାନେ ବଳି ପଡ଼ିଲେ । ଜିନ୍ନା ସାହେବ ସେତେବେଳେ ଦୂରରେ ରହି ନାଟ ଦେଖୁଥାନ୍ତି । କେବଳ ଗାନ୍ଧୀଜୀ, ନେହେରୁ ଓ ରାଜେନ୍ଦ୍ର ପ୍ରସାଦଙ୍କ ପରି ନେତାମାନେ ହିନ୍ଦୁଙ୍କ କବଳରୁ ମୁସଲମାନମାନଙ୍କୁ ବଞ୍ଚାଇବା ଲାଗି ପ୍ରାଣପଣ ଲାଗିପଡ଼ିଥିଲେ ।

ଶେଷରେ କୌଣସି ଉପାୟ ନ ଦେଖି ଭାଇସ୍‌ରାୟ ଲର୍ଡ଼ ଓ୍ୱାଭେଲ ଜିନ୍ନାଙ୍କୁ ଉପେକ୍ଷା କଲେ ଓ କେବଳ କଂଗ୍ରେସର ପରାମର୍ଶରେ କେନ୍ଦ୍ରୀୟ ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କ ନାମ ଘୋଷଣା କଲେ । ଏହି ମନ୍ତ୍ରିମଣ୍ଡଳର ନେତୃତ୍ୱ ନେଲେ ଶ୍ରୀ ଜବାହରଲାଲ ନେହେରୁ । ସର୍ଦ୍ଦାର ପଟେଲ, ରାଜେନ୍ଦ୍ର ପ୍ରସାଦ ଓ ରାଜଗୋପାଳାଚାରୀଙ୍କ ପରି କଂଗ୍ରେସର ପ୍ରଖ୍ୟାତ ନେତାମାନେ ମଧ୍ୟ ଏହି ମନ୍ତ୍ରିମଣ୍ଡଳରେ ସଂପୃକ୍ତ ଥିଲେ । ଏ ବାଟେ ମଧ୍ୟ ଜିନ୍ନା ସାହେବଙ୍କ ଔଷଧ କାମ ନକରିବାରୁ ନିରୁପାୟ ହୋଇ ଶେଷରେ ତାଙ୍କୁ ନଇଁବାକୁ ପଡ଼ିଲା । ନେହେରୁଙ୍କ ମନ୍ତ୍ରିମଣ୍ଡଳରେ ପରେ କିଛି ପରିବର୍ତ୍ତନ କରାଗଲା ଓ ମୁସଲିମ ଲିଗ୍‌ର କିଛି ସଭ୍ୟ ବି ମନ୍ତ୍ରିମଣ୍ଡଳକୁ ଆସିଗଲେ ।

ଜିନ୍ନା ସାହେବ ଏବେ ନୂଆ ଉପାୟ ପାଞ୍ଚିଲେ । ସେ ମୁସଲିମ୍ ଲିଗ୍‌ର ମନ୍ତ୍ରୀମାନଙ୍କୁ ନିର୍ଦ୍ଦେଶ ଦେଲେ ଯେ ସେମାନେ ସରକାରୀ ଦଳର ନେତା ଶ୍ରୀ ନେହେରୁଙ୍କ କଥା ମାନିବେ ନାହିଁ କି ମନ୍ତ୍ରିମଣ୍ଡଳର ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବେ ନାହିଁ । ମୁସଲିମ୍ ଲିଗ୍‌ର ମନ୍ତ୍ରୀ ଲିଆକତ୍ ଅଲ୍ଲୀ ଖାଁଙ୍କ ହାତରେ ଅର୍ଥବିଭାଗ ଥିଲା । ସମସ୍ତ ସରକାରୀ ଖର୍ଚ୍ଚ ମଞ୍ଜୁର କରିବା ଏହି ବିଭାଗର ଦାୟିତ୍ୱ । କଂଗ୍ରେସ ମନ୍ତ୍ରୀଙ୍କ ଦ୍ୱାରା ଖର୍ଚ୍ଚ ଲାଗି ଯେକୌଣସି ପ୍ରସ୍ତାବ ଆସିଲା ଲିଆକତ୍ ଅଲ୍ଲୀ ଖାଁ ତାକୁ ନାମଞ୍ଜୁର କରିବାରେ ଲାଗିଲେ; ଫଳରେ ଦେଶରେ ସବୁ ଯୋଜନା ଓ କାମ ବନ୍ଦହୋଇଗଲା । ନୂତନ ସମ୍ବିଧାନ ପ୍ରଣୟନ ଲାଗି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ଅଧ୍ୟକ୍ଷତାରେ ଯେଉଁ ବିଧାନ ପରିଷଦ ଗଠିତ ହେଲା ସେଥିରେ ମଧ୍ୟ ମୁସଲିମ୍ ଲିଗ୍‌ର ସଭ୍ୟମାନେ ସହଯୋଗ କଲେ ନାହିଁ ଓ ନିଜ କଥାରେ ଅଡ଼ିବସିଲେ ।

ଏ ସମସ୍ତ ଅସୁବିଧା ଜବାହରଲାଲ ନେହେରୁ ଭାଇସରାୟଙ୍କ ଦୃଷ୍ଟିକୁ ଆଣିଲେ ଓ ଲଣ୍ଡନରେ ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କୁ ମଧ୍ୟ ପତ୍ର ଲେଖିଲେ । ସେ ଏତେ ବିରକ୍ତ ହୋଇ ଯାଇଥିଲେ ଯେ ପରିଶେଷରେ ଇସ୍ତଫା ଦେବାଲାଗି ମଧ୍ୟ ଠିକ୍ କରିନେଇଥିଲେ ।

ଏହି ପରିସ୍ଥିତିରେ ଲର୍ଡ଼ ଓ୍ୱାଭେଲ ଭାରତରୁ ବିଦାୟ ନେଲେ ଓ ତାଙ୍କ ପରିବର୍ତ୍ତେ ଲର୍ଡ଼ ମାଉଣ୍ଟବାଟେନ୍ ନୂଆ ଭାଇସ୍‌ରୟ ହୋଇ ଭାରତକୁ ଆସିଲେ । ସେତିକିବେଳେ ଘୋଷଣା କରାଗଲା ଯେ ଇଂରେଜମାନେ ପରବର୍ତ୍ତୀ ଅଳ୍ପ କେତେମାସ ଭିତରେ ଭାରତ ଛାଡ଼ି ଚାଲିଯିବେ । ଏବେ ଭାରତରେ ଇଂରେଜମାନଙ୍କର ରହିବା ବଡ଼ କଷ୍ଟକର ହୋଇ ପଡ଼ିଥିଲା । ସ୍ୱାଧୀନତା ଆନ୍ଦୋଳନ ତ ବନ୍ଦ ହେବାର ନଥିଲା । ଅପରପକ୍ଷରେ ଜିନ୍ନା ସାହେବ ବି ନିଜର ଜିଦ୍‌ରୁ ଟଳିବାକୁ ନ ଥିଲେ । ପରିଶେଷରେ ଭାରତର ଅନ୍ତିମ ଇଂରେଜ ଭାଇସରାୟ ଲର୍ଡ଼ ମାଉଣ୍ଟବାଟେନ ପ୍ରସ୍ତାବ ରଖିଲେ ଯେ ଭାରତକୁ ଦୁଇ ଭାଗରେ ବିଭକ୍ତ କରିଦିଆଯାଉ । ଏହି ପ୍ରସ୍ତାବକୁ କାର୍ଯ୍ୟକାରୀ କରି ଇଂରେଜମାନେ ଭାରତ ଛାଡ଼ି ଚାଲିଯିବାକୁ ପ୍ରସ୍ତୁତ ଥିଲେ ।

ସାରା ଦେଶରେ ଭୟଙ୍କର ଦଙ୍ଗାଗୋଳ ବ୍ୟାପିଗଲା । ସେତେବେଳେ ଅବସ୍ଥା ସମ୍ଭାଳିବାକୁ କଂଗ୍ରେସର ଶକ୍ତି ନ ଥିଲା କି ମୁସଲିମ୍ ଲିଗ୍‌ର ବି ଶକ୍ତି ନଥିଲା । ଗାନ୍ଧିଜୀଙ୍କ ଇଚ୍ଛା ପୂରା ହେଲାନି କି ଜିନ୍ନାଙ୍କର ବି । ଏ ଦେଶ ଅଖଣ୍ଡ ରହିବ ଓ ହିନ୍ଦୁ-ମୁସଲମାନ ଭାଇ ଭାଇ ହୋଇ ରହିବେ, ସେ କଥା ନହେଲା । ଜିନ୍ନାଙ୍କୁ ଯେଉଁ ପାକିସ୍ଥାନ ମିଳିଲା ତାହା ଦୁଇ ଖଣ୍ଡରେ ମିଳିଲା ଏବଂ ସେ ଦୁଇଖଣ୍ଡ ଭିତରେ ଦୂରତା ଥିଲା ଦେଢ଼ ହଜାର ମାଇଲ । ଏପରି ପାକିସ୍ଥାନର ସେ କଳ୍ପନା ସୁଦ୍ଧା କରିନଥିଲେ (ଏବେ ପୂର୍ବ-ପାକିସ୍ଥାନ 'ବାଂଲାଦେଶ' ହୋଇ ପାକିସ୍ଥାନରୁ ଅଲଗା ହୋଇଯାଇଛି) ।



କଂଗ୍ରେସକୁ ଏହି ଅପ୍ରୀତିକର ପରିସ୍ଥିତି ଗ୍ରହଣ କରିବାକୁ ପଡ଼ିଲା । ତେବେ ଜିନ୍ନା ସାହେବଙ୍କ ନୀତି ଅନୁସାରେ ସାରା ଦେଶରେ ମୁସଲମାନମାନଙ୍କ ଭିତରେ ହିନ୍ଦୁଙ୍କ ପ୍ରତି ବିଦ୍ୱେଷ ସୃଷ୍ଟି ହୋଇ-ଯାଇଥିଲା । ଏହି ଅବସ୍ଥାରେ କଂଗ୍ରେସ ଆଗରେ ଆଉ କୌଣସି ରାସ୍ତା ନ ଥିଲା ।

କଂଗ୍ରେସ ଲାଗି ଆହୁରି ଏକ ନୈରାଶ୍ୟଜନକ ବିଷୟ ହେଲା—ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ପଠାଣମାନଙ୍କୁ ସେମାନଙ୍କର ଇଚ୍ଛା ବିରୁଦ୍ଧରେ ପାକିସ୍ଥାନ ସହିତ ମିଶାଇଦିଆଗଲା । ଏହା ବନ୍ଦ କରିବା ଲାଗି କଂଗ୍ରେସ କିଛି ବି କରିପାରିଲାନି । ଜିନ୍ନା ସାହେବ ସୀମାନ୍ତ ଗାନ୍ଧୀ ଖାଁ ଅବଦୁଲ୍ ଗଫାର ଖାଁଙ୍କୁ ନିଜର ସବୁଠାରୁ ବଡ଼ ଶତ୍ରୁ ମଣୁଥିଲେ, କାରଣ ତାଙ୍କ ନେତୃତ୍ୱରେ ପଠାଣମାନେ କଂଗ୍ରେସକୁ ସମର୍ଥନ କରୁଥିଲେ । ସ୍ୱରାଜ୍ୟ ମିଳିବା ପର୍ଯ୍ୟନ୍ତ ସୀମାନ୍ତ ଗାନ୍ଧୀଙ୍କ ବଡ଼ଭାଇ ଡକ୍ଟର ଖାଁ ସାହେବ ସେହି ସୀମାନ୍ତ ପ୍ରଦେଶର ମୁଖ୍ୟମନ୍ତ୍ରୀ ଥିଲେ ।



[ ଗାନ୍ଧୀଙ୍କ ସହିତ ଲର୍ଡ ଓ ଲେଡ଼ି ମାଉଣ୍ଟବ୍ୟାଟେନ୍ ]

# ସ୍ୱାଧୀନତା ଦିବସ—ଅଗଷ୍ଟ 15, 1947

ଶେଷରେ ସେ ଦିନ ଆସିଗଲା । 1947 ମସିହା ଅଗଷ୍ଟ 15 ତାରିଖ ଦିନ ଭାରତକୁ ଦୁଇଟି ସ୍ୱାଧୀନ ଦେଶରୂପେ ବଣ୍ଟାଗଲା । ସ୍ୱାଧୀନତାଲାଭରେ ଭାରତବାସୀ ଖୁସି ହେବା ସଙ୍ଗେ ସଙ୍ଗେ ଦେଶର ବିଭାଜନରେ ଖୁବ୍ ଦୁଃଖିତ ଥିଲେ । ଅନେକ ଲୋକଙ୍କର ଆଦୌ ବିଶ୍ୱାସ ନ ଥିଲା ଯେ ଦେଶ ସ୍ୱାଧୀନ ହେବ ଓ ସ୍ୱାଧୀନତାର ପ୍ରତୀକ ଆମ ଜାତୀୟ ପତାକା ଆମ ସରକାରୀ କୋଠାବାଡ଼ି ଉପରେ ଉଡ଼ିବ ।

ଅଗଷ୍ଟ 14 ତାରିଖ ମଧ୍ୟରାତ୍ରିରେ ନୂଆଦିଲ୍ଲୀରେ ଶ୍ରୀ ଜବାହରଲାଲ ନେହେରୁ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ରୂପେ ଶପଥ ଗ୍ରହଣ କଲେ । ଅଗଷ୍ଟ 15 ତାରିଖ ଦିନ ଦିଲ୍ଲୀର ଐତିହାସିକ ଲାଲକିଲ୍ଲାରେ ମହା ଜାକଜମକରେ ଲୋକେ ସ୍ୱାଧୀନତା ଦିବସ ପାଳନ କରିଥିଲେ । ଲାଲ କିଲ୍ଲାରେ ତିରଙ୍ଗା ପତାକା ଉଡ଼ିଲା । ଏ ହେଉଛି ସେହି ପତାକା ଯାହାର ବନ୍ଦନା ଗାଇ ଗାଇ ହଜାର ହଜାର ଦେଶଭକ୍ତ ନିଜର ଜୀବନ ଦାନ କରିଥିଲେ, ଗୁଳି ଖାଇଥିଲେ ବା ଜେଲ୍ ଯାଇଥିଲେ ।

ଝଣ୍ଡା ଊଁଚା ରହେ ହମାରା
ବିଜୟୀ ବିଶ୍ୱ ତିରଙ୍ଗା ପ୍ୟାରା
ସଦା ଶକ୍ତି ବରସାନେୱାଲା
ପ୍ରେମ ସୁଧା ସରସାନେୱାଲା
ବୀରେଁ କୋ ହର୍ଷାନେୱାଲା
ମାତୃଭୂମିକା ତନ୍‌ମନ୍ ସାରା ।।

ସାରା ଦେଶରେ ଆନନ୍ଦ ଉତ୍ସବ ହେଲା, ଶୋଭାଯାତ୍ରା ହେଲା, ଭୋଜିଭାତ ହେଲା ଓ ଘରଆଡ଼େ ଆଲୋକସଜ୍ଜା କରାଗଲା । କେତେ ଦିନ ପର୍ଯ୍ୟନ୍ତ ଏହି ଉତ୍ସବ ଚାଲିଲା ଓ ଘରଆଡ଼ ଆଲୋକମୟ ହୋଇ ରହିଲା ।

କିନ୍ତୁ ଏହି ଆନନ୍ଦ ଉତ୍ସବରୁ ବହୁ ଦୂରରେ ରହି ଗାନ୍ଧୀଜୀ ଲୁହ ଗଡ଼ାଉଥିଲେ । ହିନ୍ଦୁ ଓ ମୁସଲମାନମାନଙ୍କ ଭିତରେ ସଦ୍‌ଭାବ ଫେରାଇ ଆଣିବା ଲାଗି ସେ ପ୍ରାଣପଣ ଲାଗି-ପଡ଼ିଥିଲେ । ସେ ପ୍ରତିଜ୍ଞା କରିନେଇଥିଲେ ଯେ ନିଜର ଜୀବନ ପଛକେ ଯାଉ ଏହି ଦୁଇ ଦେଶର ହିନ୍ଦୁ-ମୁସଲମାନମାନଙ୍କ ଭିତରେ ପ୍ରେମ ଓ ସଦ୍‌ଭାବ ପ୍ରତିଷ୍ଠା କରିବା ପାଇଁ ସେ ଲାଗିରହିବେ ।

ଶେଷରେ 1948 ମସିହା ଜାନୁଆରୀ 30 ତାରିଖ ଦିନ ତାଙ୍କୁ ନିଜର ଜୀବନ ହିଁ ଉତ୍ସର୍ଗ କରିବାକୁ ପଡ଼ିଲା ।

ନୂଆ ସ୍ୱାଧୀନତା ପାଇଥିବା ଏହି ଦେଶ ଆଗରେ ସେତେବେଳେ ଅନେକ ସମସ୍ୟା ଦେଖାଦେଇଥିଲା । ସେତେବେଳେ ଏ ଦେଶ ଲାଗି ଗାନ୍ଧୀଜୀଙ୍କର ନିର୍ଦ୍ଦେଶ ସବୁଠାରୁ ଅଧିକ ଦରକାର ଥିଲା, ସେତେବେଳେ ସେ ଆମ ଭିତରେ ନ ଥିଲେ । ତେବେ ଦେଶର ନେତାମାନେ ଧୈର୍ଯ୍ୟର ସହିତ ସେହି ଗୁରୁତର ସମସ୍ୟାଗୁଡ଼ିକର ସମାଧାନ କଲେ ଓ ଶିଶୁ ସ୍ୱାଧୀନତାର ସୁରକ୍ଷାରେ ଲାଗିପଡ଼ିଲେ ।

ବିଧାନ ପରିଷଦ ଦେଶ ଲାଗି ନୂଆ ସମ୍ବିଧାନ ପ୍ରଣୟନ କରୁଥିଲେ । ଅପର ପକ୍ଷରେ ଭାରତରେ ଥିବା ସାମନ୍ତ ରାଜ୍ୟଗୁଡ଼ିକୁ (Princely States) ଧୀରେ ଧୀରେ ଭାରତର ଅଂଶ ରୂପେ ମିଶାଇ ଦିଆଗଲା । ସେମାନଙ୍କ ଲାଗି ଅନ୍ୟ କିଛି ପନ୍ଥା ନ ଥିଲା ।

1950 ମସିହା ଜାନୁଆରି 26 ତାରିଖ ସୁଦ୍ଧା ନୂତନ ସମ୍ବିଧାନ ପ୍ରଣୀତ ହୋଇ-ସାରିଥିଲା ଓ ଏହି ଦିନ ତାହା ଲାଗୁକରାଗଲା । ସମ୍ବିଧାନ ଅନୁସାରେ ଭାରତକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ଲୋକତନ୍ତ୍ର ରୂପେ ଘୋଷଣା କରାଗଲା । ଜାତୀୟ ସରକାର କେନ୍ଦ୍ର ସରକାର ଓ ପ୍ରାନ୍ତୀୟ ସରକାର ରାଜ୍ୟ ସରକାର ରୂପେ ନାମିତ ହେଲେ ।

[ସ୍ୱାଧୀନତା ଦିବସରେ ଗେଟ୍‌ୱେ ଅଫ୍ ଇଣ୍ଡିଆର ଦୃଶ୍ୟ]





ଭାରତୀୟ ଗଣତନ୍ତ୍ରର ପ୍ରଥମ ରାଷ୍ଟ୍ରପତି ରୂପେ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଓ ପ୍ରଥମ ପ୍ରଧାନମନ୍ତ୍ରୀ ରୂପେ ପଣ୍ଡିତ ଜବାହରଲାଲ ନେହେରୁ ନିର୍ବାଚିତ ହେଲେ ।



[ ପଣ୍ଡିତ ଜବାହାରଲାଲ ନେହେରୁ ]

## ଜାତୀୟ ସଙ୍କେତ

ସ୍ୱାଧୀନ ଭାରତକୁ ନିଜର ଜାତୀୟ ସଙ୍କେତ ମଧ୍ୟ ସ୍ଥିର କରିବାକୁ ପଡ଼ିଲା । ସାରନାଥସ୍ଥ ଅଶୋକସ୍ତମ୍ଭର ଶୀର୍ଷ ଭାଗରେ ଥିବା ସିଂହମୂର୍ତ୍ତିକୁ ଏହି ସଙ୍କେତ ରୂପେ ଗ୍ରହଣ କରାଗଲା । ସାରନାଥର ସ୍ତମ୍ଭରେ ଚାରୋଟି ସିଂହ ଚାରି ଦିଗକୁ ଚାହିଁ ପରସ୍ପର ପିଠି ମିଳାଇ ବସିଛନ୍ତି । ଗୌତମ ବୁଦ୍ଧ ନିଜର ଶିଷ୍ୟମାନଙ୍କୁ ସର୍ବପ୍ରଥମେ ଏହିଠାରେ ଉପଦେଶ ଦେଇଥିଲେ ଓ ସେହି ସ୍ମୃତିରେ ସମ୍ରାଟ ଅଶୋକ ଏହି ସ୍ତମ୍ଭ ନିର୍ମାଣ କରାଇଥିଲେ । ଆମ ଜାତୀୟ ସଙ୍କେତରେ କେବଳ ତିନୋଟି ସିଂହ ହିଁ ଦେଖାଯାନ୍ତି । ଏହି ସଙ୍କେତରେ ସିଂହ ପ୍ରତିକୃତିର ତଳକୁ 'ସତ୍ୟମେବ ଜୟତେ' ବୋଲି ଲେଖାଯାଇଛି । ଏହାର ଅର୍ଥ—ସତ୍ୟର ହିଁ ସବୁବେଳେ ବିଜୟ ହୁଏ ।

## ଜାତୀୟ ପତାକା

ଯେଉଁ ତିରଙ୍ଗା ପତାକା ସ୍ୱାଧୀନତା ଆନ୍ଦୋଳନ କାଳରେ ଦେଶବାସୀଙ୍କୁ ଅପାର ପ୍ରେରଣା ଯୋଗାଇଥିଲା ତାହା ଆମର ଜାତୀୟ ପତାକା ରୂପେ ଗୃହୀତ ହେଲା । ଏହି ପତାକାରେ ଅବଶ୍ୟ କିଛି ପରିବର୍ତ୍ତନ କରାଗଲା—ପତାକାର ମଝିରେ ଚରଖା ଚିହ୍ନ ବଦଳରେ ଅଶୋକଚକ୍ର ଚିହ୍ନ ରହିଲା । ପତାକାର ଉପର ଅଂଶ ଗାଢ଼ କୁଙ୍କୁମ ରଙ୍ଗ, ମଝି ଅଂଶ ଧଳା ଓ ନିମ୍ନ ଭାଗ ସବୁଜ ରଙ୍ଗର । ମଝିରେ ଥିବା ଅଶୋକଚକ୍ରର ଚିହ୍ନ ଗାଢ଼ ନୀଳ । ଅଶୋକ ଚକ୍ରରେ ଚବିଶଟି ଅର ଅଛି ।

## ଜାତୀୟ ସଂଗୀତ

ରବୀନ୍ଦ୍ରନାଥ ଠାକୁରଙ୍କର "ଜନ-ଗଣ-ମନ"କୁ ଆମର ଜାତୀୟ ସଂଗୀତ ରୂପେ ଗ୍ରହଣ କରାଗଲା । ଏହି ସଂଗୀତ ସର୍ବପ୍ରଥମେ 1911 ମସିହା ଡିସେମ୍ବର 27 ତାରିଖରେ କଲିକତାଠାରେ ଅନୁଷ୍ଠିତ ଜାତୀୟ କଂଗ୍ରେସ ଅଧିବେଶନରେ ଗାନକରାଯାଇଥିଲା ।

ଜନ-ଗଣ-ମନ ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ ସିନ୍ଧୁ ଗୁଜୁରାଟ ମରାଠା
ଦ୍ରାବିଡ଼ ଉତ୍କଳ ବଙ୍ଗ
ବିନ୍ଧ୍ୟ ହିମାଚଳ ଯମୁନା ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ ।
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗା ହେ ତବ ଜୟ ଗାଥା ॥
ଜନ-ଗଣ-ମଙ୍ଗଳ-ଦାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା ।
ଜୟ ହେ, ଜୟ ହେ, ଜୟ ହେ
ଜୟ ଜୟ ଜୟ ଜୟ ହେ ॥

Printed at Tara Art Printers, NOIDA

